# ଜନତାର ରାଜ୍ୟ



ମନମୋହନ ଚୌଧୁରୀ

କେନ୍ଦ୍ରୀୟ ଗାନ୍ଧୀ ସ୍ମାରକ ନିଧିଦ୍ୱାରା ପ୍ରକାଶିତ

# ମୂଳବହି **FREEDOM FOR THE MASSES**

# ଓ ତାହାର ହିନ୍ଦୀ ଜନତା କା ରାଜ୍

ଅନୁବାଦକ—ଶ୍ରୀ ଲକ୍ଷ୍ମଣ ମିଶ୍ର
ପ୍ରଧାନ ଶିକ୍ଷକ, ବାହାଡ଼ାଖୋଲ ହାଇସ୍କୁଲ

ପ୍ରକାଶକ—ଉତ୍କଳ ସର୍ବୋଦୟ ମଣ୍ଡଳ, କଟକ
ମୁଦ୍ରକ—ନିକୁଞ୍ଜ କିଶୋର ଦାସ,
ଗ୍ରାମସେବକ ସମବାୟ ପ୍ରେସ, କଟକ-୨

ପ୍ରଥମ ମୁଦ୍ରଣ—ଜାନୁଆରୀ, ୧୯୬୮ ମସିହା
ସଂଖ୍ୟା—ତିନିହଜାର

ମୂଲ୍ୟ—ଏକଟଙ୍କା ମାତ୍ର

# ଭୂମିକା

ଗାନ୍ଧୀ ଶତବାର୍ଷିକୀରେ ଯେତେଗୁଡ଼ିଏ ଲେଖା ପ୍ରକାଶ କରିବାର ଯୋଜନା ହୋଇଛି, ସେଗୁଡ଼ିକ ମଧ୍ୟରୁ ଏହି ପୁସ୍ତିକାଟି ଗୋଟିଏ । ସମସ୍ତେ ଜାଣନ୍ତି ଯେ ବିନୋବାଜୀ ଭୂଦାନ-ଗ୍ରାମଦାନ ଆନ୍ଦୋଳନର ପ୍ରବର୍ତ୍ତକ ଅଟନ୍ତି । ଏହି ଆନ୍ଦୋଳନ ବିଶେଷରେ ଭାରତର ଗ୍ରାମାଞ୍ଚଳ ପୁଡ଼ିକରେ ସର୍ବୋଦୟ ଭାବନାକୁ ବାସ୍ତବ ରୂପ ଦେବାର ଉଦ୍ଦିଷ୍ଟ ଅଟେ ।

ଲେଖକ ଶ୍ରୀ ମନମୋହନ ଚୌଧୁରୀ ତ୍ରିବିଧ କାର୍ଯ୍ୟକ୍ରମ ଆନ୍ଦୋଳନର ଜଣେ ଅଗ୍ରଗାମୀ ନେତା ଅଟନ୍ତି । ଗ୍ରାମଦାନ, ଗ୍ରାମାଭିମୁଖୀ ଖଦୀ ଓ ଗ୍ରାମୋଦ୍ୟୋଗ, ଏବଂ ଶାନ୍ତିସେନା ତ୍ରିବିଧ କାର୍ଯ୍ୟକ୍ରମ ଅଟେ ।

ଏହି ତ୍ରିବିଧ କାର୍ଯ୍ୟକ୍ରମର ମୂଳମନ୍ତ୍ର ଏବଂ ଯେଉଁ ଲକ୍ଷ ଲକ୍ଷ ଗ୍ରାମବାସୀ ସ୍ୱେଚ୍ଛାରେ ଗ୍ରାମଦାନ କରିଛନ୍ତି ସେମାନଙ୍କ ଉପରେ ଏହି ତ୍ରିବିଧ କାର୍ଯ୍ୟକ୍ରମର ପ୍ରଭାବ ଭାରତୀୟ ସମାଜର ପୁନର୍ନିର୍ମାଣରେ ଆଗ୍ରହୀ ବ୍ୟକ୍ତି ଅବଗତ ହେବା ଆବଶ୍ୟକ । କେବଳ ଏହି କାର୍ଯ୍ୟକ୍ରମରେ ଆସ୍ଥାବାନ୍ କର୍ମୀ ଭାବରେ ନୁହେଁ, ମାତ୍ର ସର୍ବସେବା ସଙ୍ଘର ସଭାପତି ଭାବରେ ଯେଉଁ ବ୍ୟକ୍ତି ସମଗ୍ର ଭାରତରେ ଏହାକୁ କାର୍ଯ୍ୟକାରୀ କରିବାରେ ଉତ୍ସାହରେ ଲାଗି ପଡ଼ିଛନ୍ତି ତାଙ୍କ ଛଡ଼ା ଆଉ କିଏ ଏ ବିଷୟକୁ ଉପସ୍ଥାପିତ କରିବାରେ ଅଧିକତର ଯୋଗ୍ୟ ବିବେଚିତ ହେବେ ?

ମୋର ବିଶ୍ୱାସ ଯେଉଁମାନେ ଏହି ପୁସ୍ତିକାର ସମ୍ପର୍କରେ ଆସିବେ, ସେମାନେ ଏହା ମଧ୍ୟରେ ଥିବା ବିଷୟ ଗୁଡିକ ପ୍ରତି ନିଶ୍ଚୟ ବିଶେଷ ଧ୍ୟାନ ଦେବେ । କାରଣ, ପୁସ୍ତିକା ମଧ୍ୟରେ ଥିବା ବିଷୟଗୁଡ଼ିକ କେବଳ ମାତ୍ର ଗୋଟିଏ ତତ୍ତ୍ୱ ବା ସିଦ୍ଧାନ୍ତ ବର୍ଣ୍ଣନା କରୁନାହିଁ, ମାତ୍ର ଭାରତର ଗ୍ରାମଗୁଡ଼ିକ ସହ ପ୍ରତ୍ୟକ୍ଷ ସମ୍ପର୍କ ରଖିଥିବା ହଜାର ହଜାର କର୍ମୀଙ୍କର ପ୍ରଚେଷ୍ଟା ଉପରେ ବି ଆଲୋକପାତ କରୁଛି ।

ମୋର ଦୃଢ଼ ମତ ଯେ ସରଳ ଓ ସହଜ ଶୈଳୀରେ ଏବଂ ବହୁ ଅଭିଜ୍ଞତାରୁ ଲେଖାଯାଇଥିବା ଏହି ପୁସ୍ତିକାଟି ପ୍ରତ୍ୟେକ ପାଠକଙ୍କୁ ଅନେକ ଜ୍ଞାତବ୍ୟ ତଥ୍ୟ ଯୋଗାଇବା ସଙ୍ଗେ ସଙ୍ଗେ ଗ୍ରାମଗୁଡ଼ିକର ସମସ୍ୟା ଓ ସେଗୁଡିକର ସମାଧାନ ସହ ସେମାନଙ୍କୁ ପରିଚିତ କରାଇବ ।

ଆର୍. ଆର୍. ଦିବାକର
ସଭାପତି
ଗାନ୍ଧୀ ସ୍ମାରକ ନିଧି

# ତ୍ରିମୂର୍ତ୍ତି

( ତା ୨୪ ଡିସେମ୍ବର ୧୯୬୩ ରେ ରାୟପୁର ସର୍ବୋଦୟ ସମ୍ମିଳନୀରେ ପ୍ରଦତ୍ତ ଭାଷଣର ସାରାଂଶ )

ଆମ୍ଭେମାନେ ତ୍ରିବିଧ କାର୍ଯ୍ୟକ୍ରମକୁ ପାଳନ କରିବାକୁ ଚାହୁଁ । ଅନ୍ୟ କଥାରେ, ତ୍ରିମୂର୍ତ୍ତିକୁ ପୂଜା କରିବାକୁ ଚାହୁଁ । ପ୍ରଥମଟି ହେଉଛି ସୁଲଭ ଗ୍ରାମଦାନ, ଦ୍ୱିତୀୟଟି ଗ୍ରାମାଭିମୁଖୀ ଖଦୀ ଏବଂ ତୃତୀୟଟି ହେଉଛି ଶାନ୍ତିସେନା । ଯେଉଁଠି କାର୍ଯ୍ୟ ହୋଇଛି ସେଠି ଆମେ ଅନ୍ୟ ଦୁଇଟିକୁ ପ୍ରତିଷ୍ଠା କରିବୁ । ଯେଉଁଠି ଯୋଡ଼ିଏ କାର୍ଯ୍ୟ ହୋଇଛି, ସେଠି ଆମେ ତୃତୀୟ କାର୍ଯ୍ୟକ୍ରମକୁ ପ୍ରବେଶ କରାଇବୁ । ଯେଉଁଠି ତିନୋଟି ଯାକ ନାହିଁ, ସେଇଠି ଆମେ ତିନିଟି ଯାକ ପ୍ରତିଷ୍ଠା କରିବୁ । ଏହି ତ୍ରିବିଧ କାର୍ଯ୍ୟକ୍ରମର ଯୋଜନା ଗମ୍ଭୀର ଭାବରେ ଚିନ୍ତା କରିବା ପାଇଁ ଲୋକଙ୍କ ଆଗରେ ଉପସ୍ଥାପିତ କରାଯାଇଛି । ଏହି ପ୍ରତ୍ୟେକଟିର ଖାସ କରି ଅନେକ ବିଷୟ ଜାଣିବାକୁ ଅଛି । ଏଣୁ ପ୍ରତ୍ୟେକଟି ବିଷୟରେ ଯଦିଚ ଅଲଗା ଅଲଗା ଭାବରେ ଚିନ୍ତା କରିବା ଦରକାର ପଡ଼ୁଛି, ତଥାପି ଆମର କାର୍ଯ୍ୟ କ୍ଷେତ୍ରରେ ଏହି ତିନଟିକୁ ପରସ୍ପର ଠାରୁ ପୃଥକ୍ କରିଦେଲେ ଚଳିବ ନାହିଁ । କାର୍ଯ୍ୟ କରିବା ବେଳେ ଏହି ତିନଟିକୁ ଏକାଠି ନେବାକୁ ହେବ ।

ତ୍ରିମୂର୍ତ୍ତି ବାଇବେଲର ତିନୋଟି ଦେବତା ଭଳି । ଏହା ଅବିଭାଜ୍ୟ ଏବଂ ଏକ ଅଟେ ।

ମୁଁ ଯେତେବେଳେ "ଜୀବନଦାନ" କଲି ଅର୍ଥାତ୍ ମୋର ଜୀବନକୁ ଉତ୍ସର୍ଗ କଲି ସେତେବେଳେ ମୁଁ ଏହାକୁ ଏକମନ୍ତ୍ର ଦ୍ୱାରା ପବିତ୍ର କରିନେଲି । ମୁଁ ଏହି ପବିତ୍ର ଓ ଗାମ୍ଭୀର୍ଯ୍ୟ ପୂର୍ଣ୍ଣ ବାକ୍ୟ ଉଚ୍ଚାରଣ କରି ସଂକଳ୍ପ କଲି ।

"ମୁଁ ଭୂଦାନମୂଳକ ଗ୍ରାମୋଦ୍ୟୋଗପ୍ରଧାନ ଅହିଂସକ କ୍ରାନ୍ତି ପାଇଁ ଜୀବନକୁ ଉତ୍ସର୍ଗ କରୁଛି ।"

ଆଜିର 'ସୁଲଭ' ଗ୍ରାମଦାନ ଭୂଦାନରୁ ବିକାଶଲାଭ କରିଛି । ଗ୍ରାମାଭିମୁଖୀ ଖଦି ଗ୍ରାମୋଦ୍ୟୋଗର ସର୍ବୋତ୍ତମ ସଂକେତ ଏବଂ ଶାନ୍ତିସେନା ହେଉଛି ଅହିଂସକ କ୍ରାନ୍ତିର ଅଗ୍ରଦୂତ ।

ଆମ କାର୍ଯ୍ୟକ୍ରମର ମହତ୍ତ୍ୱ ହେଉଛି ଯେ କେବଳ ଭାରତକୁ ନୁହେଁ ମାତ୍ର ସମଗ୍ର ଜଗତକୁ ଧ୍ୱଂସ-ମୁଖରୁ ରକ୍ଷା କରିବାର ବାଟ ଏହା ବତାଉଛି । କାରଣ ଏହି କାର୍ଯ୍ୟକ୍ରମ ଦ୍ୱାରା ଜନତାର ଶକ୍ତି ଉଦ୍ଦୀପିତ ହୁଏ । ଯଦି ଲୋକଙ୍କର ଶକ୍ତି ଜାଗ୍ରତ ନ ହୁଏ; ଗ୍ରାମ-ବାସୀଗଣ ଗରିବ ଲୋକଙ୍କର ଦାୟିତ୍ୱ ଯଦି ବହନ ନ କରନ୍ତି, ଯଦି ଲୋକେ ସବୁ ବିଷୟରେ ନିରୁପାୟ ହୋଇ ସରକାର ଉପରେ ନିର୍ଭର କରନ୍ତି, ତେବେ ସ୍ୱାଧୀନତା, ଗଣତନ୍ତ୍ର ଓ ସମାଜବାଦ ଏହି ତିନୋଟି ମୌଳିକ ମୂଲ୍ୟରୁ ଗୋଟିଏ ହେଲେ ବି ତିଷ୍ଠି ପାରିବ ନାହିଁ । ଏହା ଫଳରେ କେବଳ ଭାରତ ନିଜେ ଯେ ଧ୍ୱଂସର ସମ୍ମୁଖୀନ ହେବ, ତାହା ନୁହେଁ, ସମଗ୍ର ପୃଥିବୀରେ ନିଆଁ ଲଗାଇ ଦେବ ।

ବିନୋବା

## ପ୍ରଥମ ଅଧ୍ୟାୟ

# ସ୍ୱରାଜ ଓ ପରବର୍ତ୍ତୀ ଅବସ୍ଥା

"ନୂଆ ଦିଲ୍ଲୀର ପ୍ରାସାଦଗୁଡ଼ିକ ଏବଂ ସେଗୁଡ଼ିକର ବଗଲରେ ଥିବା ଜୀର୍ଣ୍ଣଶୀର୍ଣ୍ଣ କୁଟୀରମାନଙ୍କ ଭିତରେ ଥିବା ଦୁଃଖଦାୟକ ବିଷମତା ସ୍ୱାଧୀନ ଭାରତରେ ଗୋଟିଏ ଦିନ ବି ବର୍ତ୍ତି ପାରିବ ନାହିଁ ।"

ଏ କଥା ସ୍ୱରାଜ ଆସିବାର କିଛି ବର୍ଷ ପୂର୍ବରୁ ଗାନ୍ଧୀଜୀ କହିଥିଲେ । ମାତ୍ର ସେହି ବିଷମତା କେବଳ ଯେ ରହିଛି ତାହା ନୁହେଁ ବରଂ ବଢ଼ିଚାଲିଛି ।

ସ୍ୱାଧୀନତା ଲାଭର କୋଡ଼ିଏ ବର୍ଷ ପରେ ବି ଅଧିକାଂଶ ଲୋକ ଦାରିଦ୍ର୍ୟରେ ବୁଡ଼ି ରହିଛନ୍ତି । ପୂର୍ବପରି ବହୁଲୋକ ଭୋକିଲ ଓ ବେକାର ହୋଇ ରହିଛନ୍ତି । ଲକ୍ଷ ଲକ୍ଷ ଲୋକଙ୍କର ଜୀବନ ଅଜ୍ଞାନ ଓ ଅସ୍ୱାସ୍ଥ୍ୟ ଦ୍ୱାରା ଦୁଃଖମୟ ହୋଇଛି ।

ତଥାପି ଲୋକେ ସ୍ୱାଧୀନତାର ଆକାଂକ୍ଷା ରଖିଥିଲେ । ଥରେ ସ୍ୱରାଜ ହେଲେ ଏସବୁ ବଦଳିଯିବ ବୋଲି ବିଶ୍ୱାସ କରି ଲୋକେ ସ୍ୱାଧୀନତା ପାଇଁ ଲଢ଼ିଥିଲେ ।

ଆମ୍ଭେମାନେ ଏପରି ଏକ ଅସାଧାରଣ ଯୁଗରେ ବାସ କରୁଛୁଁ, ଯେଉଁ ଯୁଗରେ କି ଜ୍ଞାନର ସୀମା ବହୁଦୂର ବିସ୍ତୃତ ହୋଇ ଯାଇଛି। ବିଜ୍ଞାନ ମନୁଷ୍ୟ ହାତରେ ଅସୀମ ଶକ୍ତି ଦେଇଛି। ଆମର ଚାରିଆଡ଼େ ବିଜ୍ଞାନର ଚମତ୍କାରିତା ଦେଖି ପାରୁଛୁଁ। ଏହି ଶକ୍ତି ସଠିକ ଭାବରେ କାମରେ ଲାଗିଲେ ପୃଥିବୀରେ ସ୍ୱର୍ଗରାଜ୍ୟ ସ୍ଥାପିତ ହୋଇ ପାରିବ। କ୍ଷୁଧା, ଅସ୍ୱାସ୍ଥ୍ୟ ଓ ଅଜ୍ଞାନକୁ ଚିରଦିନ ପାଇଁ ଦୂର କରାଯାଇ ପାରିବ ଏବଂ ପୃଥିବୀର ସବୁ ଲୋକ ସୁଖ-ସନ୍ତୋଷରେ ଜୀବନ ଯାପନ କରିପାରିବେ।

ପକ୍ଷାନ୍ତରେ, ଆଜକାଲି ପରି ଯଦି ଶୋଷଣ ପାଇଁ ବିଜ୍ଞାନକୁ ମନ୍ଦ ଦିଗରେ ଲଗାଯାଏ ତେବେ ଏହା ସମଗ୍ର ଜୀବଜଗତର ଧ୍ୱଂସ ଘଟାଇବ। ଆଣବିକ ଓ ଉଦ୍‌ଯାନ ବୋମାରେ ସେହି ଭୟଙ୍କର ଶକ୍ତି ପୂରି ରହିଛି।

ଗାନ୍ଧୀଜୀ ଜାଣିଥିଲେ ଯେ ବିଜ୍ଞାନ ସହ ହିଂସାର ସଂଯୋଗ ହେଲେ ତାହା ଜଗତର ଧ୍ୱଂସ ସାଧନ କରିବ। ପକ୍ଷାନ୍ତରେ ଅହିଂସାର କାର୍ଯ୍ୟରେ ବିଜ୍ଞାନ ଲାଗିଲେ ତାହା ସମଗ୍ର ମନୁଷ୍ୟ ଜାତିକୁ ଶାନ୍ତି, ମୁକ୍ତି ଓ ସୁଖର ଦିଗରେ ନେଇଯିବ।

ଏଣୁ ଗାନ୍ଧୀଜୀ ଭାରତରେ ସ୍ୱାଧୀନତା ସଂଗ୍ରାମରେ ସତ୍ୟାଗ୍ରହ ନାମକ ଅପୂର୍ବ ଅସ୍ତ୍ର ପ୍ରୟୋଗ କରିଥିଲେ ଏବଂ ଅହିଂସ ସମାଜର ମୂଳ ଭିତ୍ତି ସ୍ଥାପନା କରିବାକୁ ଅଠର ପ୍ରକାରର ରଚନାତ୍ମକ କାର୍ଯ୍ୟକ୍ରମ ଆରମ୍ଭ କରିଥିଲେ। ଏହାକୁ ସେ ସର୍ବୋଦୟ କହୁଥିଲେ।

ଭାରତର ବକେତେଗୁଡ଼ିଏ ମୌଳିକ ସମସ୍ୟା ରହିଛି। ଏହି ସମସ୍ୟାମାନଙ୍କ ଭିତରୁ କେତେକ ଭାରତର ଅତୀତ ଇତିହାସର

ଫଳ  ଆଜି କେତେଗୁଡ଼ଏ ବିଦେଶୀ ଶାସନ ବେଳେ ସୃଷ୍ଟି ହୋଇଥିଲା । ଫଳରେ ଅନ୍ୟ କେତେକ ସମସ୍ୟା ସ୍ୱାର୍ଥପରତା ଓ ଶୋଷଣ ଉଦ୍ଦେଶ୍ୟରେ ବିଜ୍ଞାନର ଦୁରୁପଯୋଗରୁ ସମ୍ଭୂତ ହୋଇଛି ।

ଭାରତର ସାଂସ୍କୃତିକ ପରମ୍ପରା ଅତି ମନୋରମ ଏବଂ ମହାସାଗର ପରି ବିଶାଳ ଅଟେ । ସେହି ମହାସାଗରରେ ନାନା ସଂସ୍କୃତିର ଅସଂଖ୍ୟ ସାନବଡ଼ ସ୍ରୋତ ଆସି ମିଳିଛନ୍ତି । ଭାରତରେ ବିଭିନ୍ନ ସଂସ୍କୃତିର ସୁଷମ ସମନ୍ୱୟ ଭାରତକୁ ସମୃଦ୍ଧ ଓ ଶକ୍ତିଶାଳୀ କରିଥିଲା । ମାତ୍ର ସେହି ସମନ୍ୱୟ ପୂର୍ଣ୍ଣାଙ୍ଗ ହୋଇନାହିଁ । ଏଣୁ ଭାଷା, ଧର୍ମ, ଜାତି, ବର୍ଣ୍ଣ, ପ୍ରଭୃତିକୁ ଭିତ୍ତିକରି ସଂଘର୍ଷ ଓ ସଂକୀର୍ଣ୍ଣତାର ବହୁ ଶୋଚନୀୟ ଦୁର୍ଘଟନା ଏ ଦେଶରେ ଘଟି ଯାଉଛି ।

ଶହ ଶହ ବର୍ଷର ଦୋଷପୂର୍ଣ୍ଣ ସମାଜବ୍ୟବସ୍ଥା ଫଳରେ ଲୋକେ ଆତ୍ମବିଶ୍ୱାସ ଓ ଅଭିକ୍ରମ ହରାଇଛନ୍ତି । ବିଦେଶୀ ଶାସନ ଏହି ପରିସ୍ଥିତିକୁ ଅଧିକତର ଜଟିଳ କରି ଦେଇଥିଲା । ଗାନ୍ଧିଜୀ ଏହାର ପ୍ରତିକାର ପାଇଁ ଯତ୍ନ କରିଥିଲେ ଏବଂ କେତେକ ପରିମାଣରେ ସଫଳ ମଧ୍ୟ ହୋଇଥିଲେ । କିନ୍ତୁ ବ୍ୟାଧି ଏପର୍ଯ୍ୟନ୍ତ ରହିଛି । ସେମାନଙ୍କ ପାଇଁ ଅନ୍ୟ କେହି କରି ଦେଉ, ଏହି ଧାରଣାରେ ଲୋକେ ସବୁ ବିଷୟରେ ସରକାରଙ୍କର ବା ବଡ଼ ବଡ଼ଆଙ୍କର ମୁଖାପେକ୍ଷୀ ହୋଇ ରହିଛନ୍ତି ।

ଆଧୁନିକ ଶିଳ୍ପ ଓ ବ୍ୟବସାୟ-ବାଣିଜ୍ୟ ଅତି ଅଳ୍ପ ଲୋକଙ୍କ ହାତରେ ଦେଶର ସମ୍ପଦକୁ କେନ୍ଦ୍ରୀଭୂତ କରି ରଖିଛି । ରାଷ୍ଟ୍ରାୟତ୍ତ ଶିଳ୍ପକୁ ଛାଡ଼ିଦେଲେ, ଭାରତ-ବର୍ଷରେ ୭୫ଟି ପରିବାର ଦେଶର ଶତକଡ଼ା ୫୭ ଧନ ସମ୍ପତ୍ତିର ମାଲିକ ହୋଇ ବସିଛନ୍ତି ।

ଜମିର ମାଲିକାନାରେ ବହୁ ବୈଷମ୍ୟ ରହିଛି । ଜମି ଚଷୁଥିବା ଶତକଡ଼ା ୬୦ ଭାଗ ଲୋକ ଏକାବେଳକେ ଭୂମିହୀନ ଅଥଚ ସମୁଦାୟ କୃଷିଭୂମିର ଶତକଡ଼ା ୭୦ ଭାଗ ଅତି ଅଳ୍ପ ସଂଖ୍ୟକ ଲୋକଙ୍କ ହାତରେ ରହିଛି ।

କୋଟି କୋଟି ଲୋକଙ୍କୁ ଧନ୍ଦା ଯୋଗାଉଥିବା ଅନେକ କ୍ଷୁଦ୍ର ଶିଳ୍ପକୁ ଆଧୁନିକ ଯନ୍ତ୍ର-ଶିଳ୍ପ ଧ୍ୱଂସ କରି ଦେଇଛି । ଏହାର ବଦଳରେ ଅନ୍ୟ କୌଣସି ଧନ୍ଦାର ବ୍ୟବସ୍ଥା ଏମାନଙ୍କ ପାଇଁ କରା ନ ଯିବାରୁ ଏମାନେ ବାଧହୋଇ ଆଳସ୍ୟ ଓ ଦାରିଦ୍ର୍ୟରେ ଜୀବନ ଯାପନ କରୁଛନ୍ତି ।

ଯେଉଁସବୁ ମୌଳିକ ସମସ୍ୟାର ଆମେ ବର୍ତ୍ତମାନ ସମ୍ମୁଖୀନ ହୋଇଛୁଁ, ସେଗୁଡ଼ିକ ମଧ୍ୟରୁ ଏ କେତୋଟି ମୌଳିକ ସମସ୍ୟାର ସମାଧାନ ଆଗେ ନ କରିବା ଯାଏ ଖାଦ୍ୟାଭାବ, ମୂଲ୍ୟବୃଦ୍ଧି, ବେକାରି, ଭ୍ରଷ୍ଟାଚାର ପ୍ରଭୃତି ଅନ୍ୟ ଯେଉଁ ସମସ୍ୟାମାନ ଆମକୁ ପୀଡ଼ା ଦେଉଛି ସେ ସବୁର ସମାଧାନ ବାସ୍ତବ ଦୃଷ୍ଟିରୁ ଅସମ୍ଭବ । ସରକାର ସକଳ ଚେଷ୍ଟା କଲେ ବି ଏସବୁ ସମସ୍ୟାର ସମାଧାନ କରିବାରେ ବିଫଳ ହୋଇଛନ୍ତି । ଏସବୁ ସମାଧାନ କରିବା ସରକାରି ଶକ୍ତିର ବାହାରେ ବୋଲି ଗାନ୍ଧୀଜୀ ଭାବୁଥିଲେ ଏବଂ ବିନୋବାଜୀ ଭାବୁଛନ୍ତି ।

ସରକାରର ଶକ୍ତିଠାରୁ ଲୋକଙ୍କର ଶକ୍ତି ବହୁତ ବେଶୀ । ଜନତାହିଁ ସରକାରକୁ ଗଢ଼େ ଓ ଭାଙ୍ଗେ ଏବଂ ବିପ୍ଳବ କରିଆରେ ବିରାଟ ପରିବର୍ତ୍ତନ ଆଣି ପାରେ । ଏ ପର୍ଯ୍ୟନ୍ତ ବିପ୍ଳବ ଅଧିକାଂଶ ରୂପେ ହିଂସାତ୍ମକ ହୋଇଛି । ଅହିଂସକ/ବିପ୍ଳବ କିପରି କରିବାକୁ ହୁଏ, ତାହା ଗାନ୍ଧୀଜୀ ତାଙ୍କର ସତ୍ୟାଗ୍ରହ ଆନ୍ଦୋଳନ ଦ୍ୱାରା

ଦେଖାଇଛନ୍ତି । ସ୍ୱାଧୀନତା ପାଇବାରେ ସେ ଆମ୍ଭମାନଙ୍କୁ ସାହାଯ୍ୟ କରିଛନ୍ତି । ଯେଉଁସବୁ ମୌଳିକ ଅର୍ଥନୈତିକ ଓ ସାମାଜିକ ସମସ୍ୟା ଆମ୍ଭମାନଙ୍କ ସମ୍ମୁଖରେ ରହିଛି, ଶାନ୍ତିପୂର୍ଣ୍ଣଭାବରେ ସେସବୁର ସମାଧାନରେ ସାହାଯ୍ୟ କରିବାକୁ ସେ ଇଚ୍ଛୁକ ଥିଲେ । ଅର୍ଥାତ୍ ଏକ ଶାନ୍ତିପୂର୍ଣ୍ଣ ସାମାଜିକ ବିପ୍ଳବ ଆଣିବାକୁ ସେ ଇଚ୍ଛୁକ ଥିଲେ । ଗାନ୍ଧୀଜୀଙ୍କ ପରେ ବିନୋବାଜୀ ଏହି ଦିଗରେ ନେତୃତ୍ୱ ନେଇଛନ୍ତି । ସ୍ୱରାଜ ପରେ ପରିବର୍ତ୍ତିତ ପରିସ୍ଥିତିରେ ସେ ଭୂମିସମସ୍ୟାକୁ ହିଁ ସର୍ବପ୍ରଥମେ ହାତକୁ ନେଲେ ଏବଂ ଏହି ସମସ୍ୟାର ସମାଧାନ ପାଇଁ ଭୂଦାନ ଆନ୍ଦୋଳନର ସୂତ୍ରପାତ କଲେ । ଏହି ଭୂଦାନ ଆନ୍ଦୋଳନରୁ ହିଁ ପରେ ଗ୍ରାମଦାନ ଆନ୍ଦୋଳନ ବାହାରିଲା ।

ଖଦି ଓ ଶାନ୍ତିସେନା ଯୋଡ଼ିଏ ପ୍ରଧାନ କାର୍ଯ୍ୟକ୍ରମ ଯାହାକୁ ଗାନ୍ଧୀଜୀ ଆରମ୍ଭ କରି ଯାଇଛନ୍ତି । ଗ୍ରାମଦାନ, ଖଦି ଓ ଶାନ୍ତିସେନା ଏହି ତିନୋଟିକୁ ଏକତ୍ର ଗ୍ରହଣ କରାଯାଇ ଏହାକୁ ତ୍ରିବିଧ କାର୍ଯ୍ୟକ୍ରମ କୁହାଯାଉଛି । ଗାନ୍ଧୀଜୀଙ୍କର ଅନ୍ୟାନ୍ୟ ରଚନାତ୍ମକ କାର୍ଯ୍ୟକ୍ରମ ଏହି ତିନୋଟିର ଅନ୍ତର୍ଭୁକ୍ତ । କାରଣ ବିନୋବାଜୀଙ୍କ ଭାଷାରେ 'ମା'କୁ ନିମନ୍ତ୍ରଣ କରିବା ଫଳରେ ପିଲାମାନେ ମାଆ ସାଙ୍ଗରେ ସ୍ୱତଃ ଆସିଯାନ୍ତି ।' ତ୍ରିବିଧ କାର୍ଯ୍ୟକ୍ରମ ପାଇଁ ବାଟ ରଚନାତ୍ମକ କାର୍ଯ୍ୟକ୍ରମ ଖୋଲିଦିଏ ଏବଂ ସେଗୁଡ଼ିକ ପାଇଁ ଅନୁକୂଳ ବାୟୁମଣ୍ଡଳ ସୃଷ୍ଟି କରେ ।

ଏହି ତ୍ରିବିଧ କାର୍ଯ୍ୟକ୍ରମ ଭାରତୀୟ ସମାଜର ଏପରି ଶାନ୍ତିପୂର୍ଣ୍ଣ ପରିବର୍ତ୍ତନ ଆଣିବାର ଲକ୍ଷ୍ୟ ରଖିଛି ଯେ କୌଣସି ମାତ୍ରାରେ ଏହା

ଏକ ବିପ୍ଳବକୁ ଲକ୍ଷଣ ନୁହେଁ । ଆମର ବିଶ୍ୱାସ ଯେ ଯେଉଁସବୁ ସମସ୍ୟା ଆଜି ଆମକୁ ବିବ୍ରତ କରୁଛି, ସେ ସବୁର ସମସ୍ୟାର ସମାଧାନରେ ଯେଉଁ ଜନଶକ୍ତି ଲୋଡ଼ା ତାକୁ କେବଳ ଏକ୍ଷି କାର୍ଯ୍ୟକ୍ଷମ ମୁକ୍ତ ଓ ଗତିଶୀଳ କରି ପାରିବ ଏବଂ କୁଟୀର ଓ ଓ ପ୍ରାସାଦ ପାଖେ ପାଖେ ରହିବାର ବିଷମତାକୁ ଲୋପ କରିଦେବ ।

---

# ଦ୍ୱିତୀୟ ଅଧ୍ୟାୟ

## ଗ୍ରାମଦାନ

ଗ୍ରାମଦାନ ଆନ୍ଦୋଳନ ଭୂଦାନରୁ ବିକଶିତ ହୋଇଛି । ଏପ୍ରିଲ ୧୯୫୧ରେ ଭୂଦାନ ଆନ୍ଦୋଳନର ଆରମ୍ଭ ହୋଇଥିଲା । ପୂର୍ବରୁ ହାଇଦରାବାଦ ରାଜ୍ୟର ତେଲେଙ୍ଗାନା ଜିଲ୍ଲାରେ ଭୂମି ସମ୍ବନ୍ଧୀୟ ଭୟାବହ ସଂଘର୍ଷ ଘଟିଥିଲା । ଭାରତର ବହୁ ଅଞ୍ଚଳ ପରି ଏହି ଜିଲ୍ଲାରେ ଅତି ଅଳ୍ପଲୋକ ବହୁ ଭୂମିର ଅଧିକାରୀ ଥିଲେ, ଅଥଚ ବହୁ ଲୋକଙ୍କର ଖୁବ୍ କମ୍ ଜମି ଥିଲା କିମ୍ବା ଆଦୌ ଜମି ନ ଥିଲା । ବଡ଼ ବଡ଼ ଜମିମାଲିକଙ୍କ ଠାରୁ ଜମି ଛଡ଼ାଇ ନେବାକୁ ଗରିବ ଭୂମିହୀନ ଲୋକେ ହିଂସାତ୍ମକ ଆନ୍ଦୋଳନରେ ଲିପ୍ତ ହେଲେ । ଶାନ୍ତିଶୃଙ୍ଖଳା ଫେରାଇ ଆଣିବାକୁ ସୈନ୍ୟବାହିନୀ ପଠାଗଲା ଏବଂ ବହୁ ରକ୍ତପାତ ଘଟିଲା ।

ଗରିବ ଲୋକଙ୍କୁ ନ୍ୟାୟ ମିଳିବ ଅଥଚ ଶାନ୍ତି ପ୍ରତିଷ୍ଠିତ ହେବ, ଏପରି ଏକ ସମାଧାନର ଅନ୍ୱେଷଣ ପରେ ବିନୋବାଜୀ ଉପଦ୍ରୁତ ଅଞ୍ଚଳକୁ ଯାତ୍ରା କଲେ । ସେ ଗ୍ରାମେ ଗ୍ରାମେ ପଦଯାତ୍ରା କରି ଲୋକଙ୍କୁ ଭେଟିଲେ ଏବଂ ନିଜ ପରିସ୍ଥିତି ଅଧ୍ୟୟନ କଲେ । ଗୋଟିଏ ଗ୍ରାମରେ ସଭା ଚାଲିଥିବା ବେଳେ କେତେକ ଭୂମିହୀନ ପରିବାରଙ୍କ ଠାରୁ ପ୍ରକାଶ ପାଇଲା ଯେ ସେମାନେ କିଛି କିଛି ଭୂମି ପାଇଲେ ଶାନ୍ତିରେ ରହନ୍ତେ । ସେହିକ୍ଷଣି ଶ୍ରୀ ରାମଚନ୍ଦ୍ର ରେଡ୍ଡି ନାମକ ଜଣେ ଭଦ୍ରବ୍ୟକ୍ତି ଶହେ ଏକର ଜମି ଦାନ କରିବାକୁ ପ୍ରତିଶ୍ରୁତି ଦେଲେ ଏବଂ ଏଇଥିରୁହିଁ ଭୂଦାନ ଆନ୍ଦୋଳନର ଜନ୍ମ ହେଲା ।

ଆମ ଦେଶରେ ସବୁଠୁ ଜରୁରୀ ଓ ମୌଳିକ ସମସ୍ୟା ମଧ୍ୟରେ ଭୂମିସମସ୍ୟା ଅନ୍ୟତମ । ଭୂମିର ଅସମାନ ମାଲିକାନା ହେତୁରୁ ଆମ ଦେଶର କୃଷକମାନଙ୍କ ଭିତରୁ ଶତକଡ଼ା ୧୭ ଜଣ ଏକାବେଳେକେ ଭୂମିହୀନ ରହିଛନ୍ତି ଏବଂ ଆହୁରି ଅନେକ କୃଷକଙ୍କର ଖୁବ୍ କମ୍ ଭୂମିଅଛି । ଏହି ବଡ଼ ବଡ଼ ଭୂମିମାଲିକ ସାଧାରଣତଃ ନିଜେ ଚାଷ କରନ୍ତି ନାହିଁ । ଗରିବ ଲୋକମାନେ ଏହି ବଡ଼ ବଡ଼ ମାଲିକଙ୍କଠୁ ନଗଦ ଟଙ୍କା ଦେଇ ଜମି ପଟ୍ଟା-ନେଇ କିମ୍ବା ଫସଲ ଭାଗଦେଇ ଚାଷ କରନ୍ତି । ଏହାର ଫଳରେ ଅତ୍ୟଧିକ ଶୋଷଣ, ଅଧିକ ସଞ୍ଜାହାର କିମ୍ବା ଅନ୍ୟାୟ ଭାବରେ ଜମିରୁ ବେଦଖଲ ଚାଲିଛି ।

ସ୍ୱରାଜ ଆସିବାର ବହୁ ପୂର୍ବରୁ କଂଗ୍ରେସ ଓ ଅନ୍ୟାନ୍ୟ ପ୍ରଗତିଶୀଳ ରାଜନୈତିକ ଦଳ ଭୂ-ସଂସ୍କାରର ଆବଶ୍ୟକତା ଅନୁଭବ କରିଥିଲେ । ସ୍ୱରାଜ ଆସିବା ପରେ ମଧ୍ୟ ସତ୍ତ୍ୱାଧିକାରୀ-ମାନଙ୍କର, ଯଥା ଜମିଦାର ଓ ମାଲଗୁଜାର ମାନଙ୍କ ଉଚ୍ଛେଦ ଲାଗିଗଲା ମାତ୍ରେ ଜମିର ନ୍ୟାୟସଙ୍ଗତ ସମବଣ୍ଟନ ପାଇଁ ଏ ପର୍ଯ୍ୟନ୍ତ କୌଣସି ଫଳପ୍ରଦ କାର୍ଯ୍ୟ ହୋଇନାହିଁ । ଅବଶ୍ୟ ଅଧିକାଂଶ ରାଜ୍ୟରେ ଜମିର ସର୍ବୋଚ୍ଚ ସୀମା (ସୀଲିଂ) ଧାର୍ଯ୍ୟ କରାଯାଇଛି । ମାତ୍ର ଏ ପ୍ରକାର ସୀମା ସାଧାରଣତଃ ଅତି ଉଚ୍ଚ ରଖାଯାଇଛି ଏବଂ ଅତିକମ୍ ବଳକା ଜମି ଭୂମିହୀନଙ୍କ ଭାଗ୍ୟରେ ଜୁଟିଛି । ଜମିର ସର୍ବୋଚ୍ଚ ସୀମାର ଆଇନ୍ କେବଳ ବଡ଼ ମାଲିକମାନଙ୍କ ମଧ୍ୟରେ ଜମିର ପୁନର୍ବଣ୍ଟନ କରି ଦେଇଛି ଏବଂ ଜମିର ଠିକ୍ ସର୍ବୋଚ୍ଚ ସୀମାର ମଧ୍ୟରେ ରଖି ବଡ଼ ବଡ଼ ଯୋତକୁ ଛୋଟ ଛୋଟ ଯୋତରେ

ବିଭକ୍ତ କରିଛନ୍ତି । ଏହା ଫଳରେ ଗରିବ ଲୋକେ ଜମି ପାଇ ନାହାନ୍ତି ।

ବିଦେଶୀ ବିଶେଷଜ୍ଞମାନେ ସୁଦ୍ଧା ଭୂସଂସ୍କାରର ଅତ୍ୟାବଶ୍ୟକତା ସମ୍ବନ୍ଧରେ ଜୋର ଦେଇ କହିଛନ୍ତି । ସେମାନେ ଦର୍ଶାଇଛନ୍ତି ଯେ ଯେ କେବଳ ଭୂସଂସ୍କାର ହିଁ ଅଧିକ ଉତ୍ପାଦନ ପାଇଁ ପ୍ରେରଣା ସୃଷ୍ଟି କରିବ । ନଚେତ୍ ଖାଦ୍ୟ ଉତ୍ପାଦନ ନ ବଢ଼ିଲେ, ପାଞ୍ଚ ବାର୍ଷିକ ଯୋଜନା ସବୁ ବିଫଳ ହେବ । ତଥାପି ଏ ଦିଗରେ କିଛି କରାଗଲା ନାହିଁ ଏବଂ ଦେଶ ତାହାର କୁଫଳ ଭୋଗୁଅଛି ।

ଭୂଦାନ ହେଉଛି ସ୍ୱେଚ୍ଛାକୃତ ଦାନଦ୍ୱାରା ଭୂମି ସମାସ୍ୟାର ସମାଧାନର ଚେଷ୍ଟା । ବିନୋବାଜୀ ଭାରତର ଏ ମୁଣ୍ଡରୁ ସେ ମୁଣ୍ଡ ଯାଏ ପଦଯାତ୍ରା କରିବା ଦ୍ୱାରା ଏହି ଆନ୍ଦୋଳନ ତେଲେଙ୍ଗାନା ଠାରୁ ଆରବ୍ଧ ହୋଇ ସମଗ୍ର ଭାରତରେ ବିସ୍ତାର ଲାଭ କଲା । ଅଳ୍ପ କେତେବର୍ଷ ମଧ୍ୟରେ ୪୦ ଲକ୍ଷ ଏକର ଜମି ଦାନସୂତ୍ରରେ ମିଳିଛି । ଏହି ଜମିରୁ ୧୦ଲକ୍ଷ ଏକର ଚାରିଲକ୍ଷ ଭୂମିହୀନ ପରିବାରଙ୍କ ମଧ୍ୟରେ ବାଣ୍ଟିଦିଆ ଯାଇଛି । ଏଥିରୁ ଲକ୍ଷ୍ୟ କରିବାର କଥା ଯେ ଜମିର ସର୍ବୋଚ୍ଚ ସୀମାସଂକ୍ରାନ୍ତ ସରକାରୀ ଆଇନ୍‌ବଳରେ ଭାରତର ବିଭିନ୍ନ ରାଜ୍ୟର ଯେଉଁ ଜମି ପୁନର୍ବଣ୍ଟନ ପାଇଁ ମିଳିଛି, ତାହାଠାରୁ ବହୁତ ବେଶୀ ପରିମାଣର ଜମି ଭୂଦାନ ଆନ୍ଦୋଳନ ଦ୍ୱାରା ବାଣ୍ଟିବାକୁ ମିଳିଛି ।

ଭୂଦାନ ଆନ୍ଦୋଳନ ଦେଶସାରା ଏକ ନୂଆ ଆଶା ଓ ଉତ୍ସାହ ସୃଷ୍ଟି କରିଛି । ଗ୍ରାମାଞ୍ଚଳର ଅନ୍ୟାନ୍ୟ ସମାସ୍ୟା ଉପରେ ବି ଏହି ଆନ୍ଦୋଳନ ଆଲୋକପାତ କରିଛି । ଦେଶରେ ଓ ଗାଁ-

ମାନଙ୍କରେ ପୁରୁଣା ପ୍ରଥା ଓ ଧାରାସବୁ ଭାଙ୍ଗି ପଡ଼ୁଛି । ଗୋଟିଏ ନୂଆ ଆଦର୍ଶର ଭିତ୍ତି ଉପରେ ଏହାର ପୁନନିର୍ମାଣ ହେବା ଏବଂ ନୂତନ ପ୍ରାଣ ସଞ୍ଚାର ହେବା ଆବଶ୍ୟକ । ଭାରତର ଗ୍ରାମଗୁଡ଼ିକ ହିଁ ଭାରତୀୟ ସଭ୍ୟତା, ରାଜନୀତି ଓ ଅର୍ଥନୀତିର ମୂଳଭିତ୍ତି ଥିଲା । ଭାରତ ବଞ୍ଚି ରହିବାକୁ ହେଲେ ସେଗୁଡ଼ିକର ପୁନର୍ଜୀବନ ଦରକାର ।

କେତେକ ଦଶାବ୍ଦୀ ପୂର୍ବରୁ ଗାନ୍ଧୀଜୀ ଏବଂ ଅନ୍ୟାନ୍ୟ ପ୍ରସିଦ୍ଧ ଚିନ୍ତାଶୀଳ ବ୍ୟକ୍ତିମାନେ ଗ୍ରାମ-ପୁନର୍ଗଠନ ଉପରେ ଗୁରୁତ୍ୱ ଦେଇଥିଲେ । ଗ୍ରାମଦାନ ଆନ୍ଦୋଳନ ଗ୍ରାମଗୁଡ଼ିକୁ ପୁନରୁଜ୍ଜୀବିତ କରିବାକୁ ନୂତନ ପନ୍ଥା ଯୋଗାଇଛି ଏବଂ ସେଗୁଡ଼ିକର ପୁରାତନ ସମସ୍ୟା ଗୁଡ଼ିକର ସମାଧାନପାଇଁ ନୂଆବାଟ ଫିଟାଇଛି ।

୧୯୫୨ ମସିହାର ମେ ମାସରେ ବିନୋବାଜୀ ଉତ୍ତର ପ୍ରଦେଶର ହାମୀରପୁର ଜିଲ୍ଲାରେ ଗୋଟିଏ ରହଣୀରୁ ପରବର୍ତ୍ତୀ ରହଣୀକୁ ଯାଉଥିବାବେଳେ ପଥମଧ୍ୟରେ ମଙ୍ଗରୋଠ ଗ୍ରାମର ଲୋକେ ବିନୋବାଜୀଙ୍କୁ ଭେଟିଥିଲେ ଏବଂ ଗ୍ରାମର ସମସ୍ତ ଜମି ଭୂଦାନରେ ଦେଇଦେଲେ । ଏହି ରୂପେ ଗ୍ରାମଦାନ ଆନ୍ଦୋଳନର ଜନ୍ମ ହେଲା ଏବଂ ମଙ୍ଗରୋଠ ଭାରତର ପ୍ରଥମ ଗ୍ରାମଦାନ ହେଲା ।

ସେହି ଦିନରୁ ୧୯୬୬ ନଭେମ୍ବର ତା'ରିଖ ପର୍ଯ୍ୟନ୍ତ ଚଉଦବର୍ଷ ମଧ୍ୟରେ ଗ୍ରାମଦାନ ଆନ୍ଦୋଳନ ଭାରତରେ ସବୁ ଅଞ୍ଚଳରେ ବିସ୍ତାର ଲାଭ କରିଛି ଏବଂ ଭାରତରେ ମୋଟ ୪୪୬୫୨ ଗ୍ରାମଦାନ ହୋଇଗଲାଣି । ଇତି ମଧ୍ୟରେ ଏହି ବିଷୟରୁ

ଅଧିକତର ଫଳପ୍ରଦ ଓ ସବୁଶ୍ରେଣୀ ଲୋକଙ୍କ ପକ୍ଷେ ଗ୍ରହଣଯୋଗ୍ୟ କରିବାପାଇଁ ଗ୍ରାମଦାନର ମୂଳ ଧାରଣାର କିଛି ପରିବର୍ତ୍ତନ କରାଯାଇଛି ।

ଗ୍ରାମମାନଙ୍କର ଆମୂଳ ରୂପାନ୍ତର ଏହି ବିଧିରର ଲକ୍ଷ୍ୟ ଅଟେ । ଆଜି ଗ୍ରାମ ନାମକୁ ମାତ୍ର ଗ୍ରାମ । ଗ୍ରାମ ବର୍ତ୍ତମାନ କେତେ-ଗୁଡ଼ିଏ କୁଟୀରର ସମଷ୍ଟି ମାତ୍ର । ଜାତି-ଶ୍ରେଣୀର ଭେଦଭାବରେ ସଂକୀର୍ଣ୍ଣତାରେ ଆଜି ଗ୍ରାମ ଖଣ୍ଡ ବିଖଣ୍ଡ ହୋଇ ଯାଇଛି । ପ୍ରତ୍ୟେକ ପରିବାର ନିଜେ ବଞ୍ଚି ରହିବାକୁ ଚେଷ୍ଟା କରୁଛି । ଏହା ଗ୍ରାମ୍ୟ ଜୀବନର ଧ୍ୱଂସ ଘଟାଇଛି ।

ଯଦି ଆମେ ଏକତାବଦ୍ଧ ହୋଇ ଜୀବନଯାପନ କରୁ, ତେବେ ବିଜ୍ଞାନର ଆଶୀର୍ବାଦରୁ ଆମେ ଲାଭ ଉଠାଇ ପାରିବୁ ଏବଂ ସବୁ ଦିଗରେ ବହୁତ ଉନ୍ନତି କରି ପାରିବୁ । ବିଜ୍ଞାନର ଅଗ୍ରଗତି ଫଳରେ ବର୍ତ୍ତମାନ ସମଗ୍ର ପୃଥିବୀ ଖୁବ୍ ଛୋଟହୋଇ ଯାଇଛି । ପୃଥିବୀ ଚାରିପଟେ ଜଣେ ଅଳ୍ପ କେତେକ ଘଣ୍ଟାରେ ବୁଲି ଆସିପାରିବ । ଅଳ୍ପ କେତୋଟି ମୁହୂର୍ତ୍ତ ମଧ୍ୟରେ ଜଣେ ଇଚ୍ଛା କଲେ ପୃଥିବୀର ଅପର ପ୍ରାନ୍ତର ଲୋକସହିତ ଖବର ଆଦାନ ପ୍ରଦାନ କରିପାରିବ । ସମଗ୍ର ଜଗତ ତିଷ୍ଠି ରହିବାକୁ ଓ ଉନ୍ନତି କରିବାକୁ ହେଲେ ସମଗ୍ର ପୃଥିବୀକୁ ଯେ ଏକ ହେବାକୁ ପଡ଼ିବ ଏହା ବର୍ତ୍ତମାନ ଅଧିକରୁ ଅଧିକ ସୁସ୍ପଷ୍ଟ ଦେଖାଯାଉଛି । ଠିକ୍ ସେହିପରି ଗ୍ରାମକୁ ବଞ୍ଚି ରହିବାକୁ ହେଲେ ସମଗ୍ର ଗ୍ରାମଟି ଏକତାବଦ୍ଧ ହେବା ଦରକାର । ନଚେତ୍ ଯେଉଁ ଶକ୍ତିଗୁଡ଼ିକ ଗ୍ରାମ ବିରୁଦ୍ଧରେ ମୁଣ୍ଡ ଟେକୁଛି ତାହା ଗ୍ରାମଜୀବନକୁ ଏକାବେଳକେ ଧ୍ୱସ୍ତବିଧ୍ୱସ୍ତ କରିଦେବ ।

ଅନ୍ୟର ସୁଖରେ ସୁଖୀ ଓ ଦୁଃଖରେ ଦୁଃଖୀ ହେବାର ଭିତ୍ତିରେ ହିଁ କେବଳ ଏକତା ସମ୍ଭବ ହେବ । ଗୋଟିଏ ପରିବାରର ଜଣେ ବ୍ୟକ୍ତି ଅନ୍ୟମାନଙ୍କ ପାଇଁ ଆନନ୍ଦର ସହିତ ଦୁଃଖ କଷ୍ଟ ସହିଥାଏ । ପରିବାର ଭିତରେ ଗୋଟିଏ ଯଦି ପୀଡ଼ିତ ହୁଏ ତେବେ ପରିବାର ଭିତରେ ଥିବା ପ୍ରତ୍ୟେକ ବ୍ୟକ୍ତି ଉଦ୍‌ବିଗ୍ନ ହୋଇପଡ଼େ ।

ପ୍ରତ୍ୟେକ ଗ୍ରାମକୁ ଗୋଟିଏ ବୃହତ୍ ପରିବାରରେ ରୂପାନ୍ତର କରିବା ହିଁ ଗ୍ରାମଦାନର ଲକ୍ଷ୍ୟ । ଭୂମିହୀନ ଲୋକେ ଗ୍ରାମ ଭିତରେ ସବୁଠୁଁ ଦୁର୍ବଳ ଓ ଗରିବ ଅଟନ୍ତି । ଏମାନଙ୍କ ମଙ୍ଗଳ ବିଧାନ ପାଇଁ ସାରା ଗ୍ରାମକୁ ଚିନ୍ତା କରିବାକୁ ପଡ଼ିବ ।

ଏଣୁ ଭୂମିହୀନ ପରିବାରଗୁଡ଼ିକ ମଧ୍ୟରେ ବାଣ୍ଟିଦେବା ନିମିତ୍ତ ଭୂମି-ମାଲିକଙ୍କୁ ନିଜ ଜମିର କିଛି ଅଂଶ ଛାଡ଼ିବାକୁ ପଡ଼ିବ । ସୁଲଭ ଗ୍ରାମଦାନ ନୀତି ଅନୁସାରେ ଗ୍ରାମରେ ଥିବା କୃଷୋପଯୋଗୀ ଜମିର ୨୦ ଭାଗରୁ ଅନ୍ତତଃ ଭାଗେ ଭୂମିହୀନମାନଙ୍କ ପାଇଁ ଛାଡ଼ିଦେବାକୁ ହିଁ ଆପାତତଃ ଯଥେଷ୍ଟ ବୋଲି ବିଚାର କରାଯାଇଛି । ଗ୍ରାମରେ ଥିବା ଜମିର ପରିମାଣ ଅନୁସାରେ କୋଡ଼ିଏ ଭାଗରୁ ଭାଗକରୁ କିଛି କମ୍ ବା କିଛି ବେଶୀ ଦେଇପାରେ । କିଏ କେତେ ଦେବ ତାହା ଗ୍ରାମ-ସଭା ହିଁ ସ୍ଥିର କରିବ ।

ଜମି ଓ ଉତ୍ପାଦନର ଅନ୍ୟାନ୍ୟ ସାଧନର ବ୍ୟକ୍ତିଗତ ମାଲିକାନା ହିଁ ଆଜିର ପୃଥିବୀ ପକ୍ଷରେ ଏକ ବଡ଼ ଅନିଷ୍ଟ । ଆଜି ଯେଉଁ ପ୍ରକାଣ୍ଡ ଅର୍ଥନୈତିକ ବୈଷମ୍ୟ ସାରା ପୃଥିବୀକୁ ଘାରୁଛି ତାହାର ମୂଳରେ ଏହି ବ୍ୟକ୍ତିଗତ ମାଲିକାନା ରହିଛି । ଏହା ଆଜି ତୀବ୍ର ଶୋଷଣ ଓ ଅନ୍ୟାନ୍ୟ ଦୁଃଖ ଦୁର୍ଦ୍ଦଶାର କାରଣ ହୋଇଛି ।

ବାୟୁ, ଜଳ, ସୂର୍ଯ୍ୟ ଓ ଆକାଶ ପରି ଭୂମି ଭଗବାନ ସମସ୍ତଙ୍କ ବ୍ୟବହାର ପାଇଁ ସୃଷ୍ଟି କରିଛନ୍ତି । ଯେତେ ଇଚ୍ଛା ସେତେ ଜମି ନିଜ ଦଖଲରେ ଜଣେ ରଖି ଅନ୍ୟମାନଙ୍କୁ ସେଥିରୁ ବଞ୍ଚିତ କରିବାର ଅଧିକାର କାହାରି ନାହିଁ ।

ଜମି ଉପରେ ବ୍ୟକ୍ତିଗତ ମାଲିକାନା ରହିଥିବାରୁ ଜମିସବୁ ଚାଷୀଙ୍କ ହାତରୁ ଅଣଚାଷୀଙ୍କ ହାତକୁ, ସହରରେ ରହୁଥିବା ଭୂମ୍ୟଧିକାରୀଙ୍କ ହାତକୁ ଚାଲି ଯାଉଛି । ଦ୍ରୁତ ଅର୍ଥନୈତିକ ପ୍ରଗତି ଲାଗି ଗ୍ରାମଯୋଜନା ବର୍ତ୍ତମାନ ଅତ୍ୟାବଶ୍ୟକ ହୋଇପଡ଼ିଛି ଗାଁର ଜମି ଗାଁରେ ରହିବାଦ୍ୱାରା ହିଁ ଗ୍ରାମପାଇଁ ଦୀର୍ଘ ମିଆଦି ଯୋଜନା ସମ୍ଭବପର ହୋଇପାରେ ।

ଏଣୁ ଗ୍ରାମଦାନରେ ପ୍ରତ୍ୟେକ ବ୍ୟକ୍ତିଙ୍କୁ ଜମି ଉପରେ ବ୍ୟକ୍ତିଗତ ମାଲିକାନା ଗ୍ରାମଗୋଷ୍ଠୀ ହାତକୁ ଛାଡ଼ିଦେବାକୁ ହେବ ଏବଂ ସେହିଦିନ ଠାରୁ ସେହି ଗ୍ରାମବାସୀମାନେ ଏକ ଗୋଷ୍ଠୀ ଭାବରେ ଗ୍ରାମର ସବୁ ଜମିର ମାଲିକ ହେବେ । ଚାଷର ବ୍ୟବହାରିକ ସୁବିଧା ଦୃଷ୍ଟିରୁ ବ୍ୟକ୍ତିଗତ ଭାବରେ ପ୍ରତ୍ୟେକ ଚାଷ କରିପାରନ୍ତି କୋଡ଼ିଏ ଭାଗରୁ ଏକଭାଗ ଜମି ଭୂମିହୀନମାନଙ୍କୁ ବଣ୍ଟନପରେ ଅବଶିଷ୍ଟ ଜମିକୁ ଗ୍ରାମସଭା ସେହି ସେହି ମୂଳଜମି ମାଲିକଙ୍କୁ ଚାଷପାଇଁ କରିଦେବ । ଜମି ମାଲିକ ଜମିକୁ ଚାଷ କରିବେ ଏବଂ ବର୍ଷକୁ ବର୍ଷ ଗ୍ରାମପାଣ୍ଠିକୁ ନିଜ ଆୟର କିଛି ଅଂଶ ଦେବା ପରେ ନିଜ ଶ୍ରମର ଫଳ ନିଜେ ଭୋଗ କରିବେ । ଭୂମିରେ ଚାଷ କରିବାର ଅଧିକାର ତାଙ୍କର ଏବଂ ତାଙ୍କର ଉତ୍ତରାଧିକାରୀ ମାନଙ୍କର ରହିବ । ତାଙ୍କର ବିନାନୁମତିରେ ତାଙ୍କର ଦଖଲରେ

ଥିବା ଜମିର କୌଣସି ଅଂଶରୁ ଗ୍ରାମସଭା ତାହାକୁ ବେଦଖଲ କରିପାରିବେ ନାହିଁ ।

ଗ୍ରାମ ବାହାରେ ଥିବା କୌଣସି ବ୍ୟକ୍ତିଙ୍କୁ ଗ୍ରାମବାସୀ ତାହାର ଜମିକୁ ବିକ୍ରୀ ବା ବନ୍ଧକ ବା ହସ୍ତାନ୍ତର କରି ପାରିବେ ନାହିଁ । ଗ୍ରାମସଭାର ପୂର୍ବ ଅନୁମତି ନେଇ କେତେକ ସୀମା ବଦ୍ଧ ପ୍ରକାରେ ଗ୍ରାମ ଭିତରେ ସେ ଏହା କରି ପାରିବେ । ଏହାଦ୍ୱାରା ଗ୍ରାମର ଜମି ନିଶ୍ଚିତ ଭାବରେ ଗ୍ରାମର ହୋଇ ରହିବ । ଏହା ଫଳରେ କୌଣସି ଗ୍ରାମବାସୀ ବେପରବାୟ ଭାବରେ ଚଳିବା ବା ନିଶାପାଣି ଖାଇ ସମ୍ପତ୍ତିକୁ ଉଡ଼ାଇ ଦେବା ସମ୍ଭବ ହେବନାହିଁ ।

ଗ୍ରାମରେ ଗୋଟିଏ ଗ୍ରାମସଭା ରହିବ । ଏହି ସଭାରେ ପ୍ରତ୍ୟେକ ସାବାଳକ ପୁରୁଷ ଓ ସ୍ତ୍ରୀ ସଭ୍ୟ ରହିବେ । ଗ୍ରାମସଭା ସେମାନଙ୍କ ମଧ୍ୟରୁ ଜଣେ ସଭାପତି ଓ ଜଣେ ସମ୍ପାଦକ ନିର୍ବାଚନ କରିବେ । ଗ୍ରାମଟି ଖୁବ୍ ବଡ଼ ହୋଇଥିଲେ, ଏହାର ମଧ୍ୟ ଏକ ନିର୍ବାଚିତ କାର୍ଯ୍ୟ ନିର୍ବାହକ ସମିତି ରହିବ । ଗ୍ରାମସଭାହିଁ ଗ୍ରାମର ହାନି-ଲାଭର ତତ୍ତ୍ୱ ନେବ । ଗ୍ରାମର ଅର୍ଥନୈତିକ ଉନ୍ନୟନ ପାଇଁ ଯୋଜନା କରିବ । ଗ୍ରାମର ନୈତିକତାର ବୃଦ୍ଧି ପାଇଁ ଯତ୍ନ ନେବ । ଗ୍ରାମସଭା ଗ୍ରାମର ଅସହାୟ ବ୍ୟକ୍ତି ବିଧବା, ଅନାଥ ବାଳକ ବାଳିକା ଓ ରୁଗ୍ଣ ବ୍ୟକ୍ତି ମାନଙ୍କର ତତ୍ତ୍ୱ ନେବ । ମା ତା'ର ସନ୍ତାନ ମାନଙ୍କର ଯତ୍ନ ନେବା ପରି ଗ୍ରାମସଭା ସାରା ଗ୍ରାମର ଯତ୍ନ ନେବ । ଗ୍ରାମସଭା କାର୍ଯ୍ୟତଃ ଗ୍ରାମର ସରକାର ହେବ । ଏଥିପାଇଁ ନିୟମିତ ଭାବରେ ଏବଂ ଥରକୁଥର ଗ୍ରାମସଭାର ବୈଠକ ବସିବ ।

ଭାରତର ବିଭିନ୍ନ ରାଜ୍ୟର ଗ୍ରାମଦାନ ଆଇନ୍ ଅନୁସାରେ ଏକଶତ ବା ଏକଶତରୁ ଅଧିକ ଲୋକସଂଖ୍ୟା ଥିବା ଗ୍ରାମର

ଗ୍ରାମସଭାକୁ ଗ୍ରାମପଞ୍ଚାୟତ ମାନ୍ୟତା ଦିଆଯାଇଛି । ଏଣୁ ଗ୍ରାମସଭାହିଁ ପଞ୍ଚାଏତି ରାଜର ପ୍ରଧାନ ମୂଳଦୁଆ ପଥର ଅଟେ ।

ଗ୍ରାମସଭା ଗ୍ରାମବାସୀ ମାନଙ୍କର ସମଷ୍ଟିଗତ ଇଚ୍ଛାର ପ୍ରତିନିଧିତ୍ୱ କରିବ । ତେଣୁକରି ଏହି ଗ୍ରାମସଭା ସବୁ ବାହାର ଲୋକଙ୍କ ସଙ୍ଗେ କାରବାର କରିବ । ଗ୍ରାମବାସୀମାନେ ବ୍ୟକ୍ତିଗତ ଭାବରେ ମହାଜନ, ବେପାରୀ ସରକାରୀ କର୍ମଚାରୀ ବା ପୋଲିସ ଆଦିଙ୍କର ସମ୍ମୁଖୀନ ହେବେନାହିଁ । ଫଳରେ ଗ୍ରାମବାସୀମାନେ ବହୁ ଶୋଷଣ ଅତ୍ୟାଚାର ଓ ଜୁଲୁମରୁ ରକ୍ଷା ପାଇ ପାରିବେ । ଯେପରି ହଜାର ହଜାର ଗ୍ରାମଦାନ ଗାଁର ଲୋକ ପାଇ ପାରୁଛନ୍ତି ।

ଗ୍ରାମସଭାର ପ୍ରତ୍ୟେକ ପ୍ରସ୍ତାବ ସର୍ବସମ୍ମତି କ୍ରମେ ବା ସର୍ବାନୁମତିରେ ଖୁବ୍‌ବେଶୀ ସଂଖ୍ୟା-ଗରିଷ୍ଠ-ମତରେ ଗୃହୀତ ହେବା ଦରକାର । ମାଣ୍ଡି-ବ୍ୟବହାର ଓ ଜମି ପରିଚାଳନା ପ୍ରଭୃତି ବଡ଼ ବଡ଼ ଗୁରୁତ୍ୱପୂର୍ଣ୍ଣ ବିଷୟ ଉପରେ ସିଦ୍ଧାନ୍ତ ସର୍ବସମ୍ମତି କ୍ରମେ ହେବା ଉଚିତ । ଏ ସମ୍ବନ୍ଧରେ ଗ୍ରାମସଭା ସ୍ୱତନ୍ତ୍ର ନିୟମ ପ୍ରଣୟନ କରିବେ ।

ଗ୍ରାମ ଜୀବନରେ ଦଳାଦଳି ଗ୍ରାମପକ୍ଷରେ ଏକ ଅଭିଶାପ । ଅନେକ ଗ୍ରାମରେ ଦୁଇଟା ତିନୋଟି ଲେଖାଏଁ ବିବଦମାନ ଦଳ ଅଛନ୍ତି । ଏହି ଦଳମାନଙ୍କ ମଧ୍ୟରେ କଳି-ତକରାଳ ହେତୁରୁ ଗ୍ରାମର ପ୍ରତି ବ୍ୟକ୍ତିର ଜୀବନ ଅତି ଦୁଃଖମୟ ହୁଏ । ରାଜନୈତିକ ଦଳଗୁଡ଼ିକ ଏହି ବିବାଦମାନ ଦଳଙ୍କ ସହ ମେଣ୍ଟ ବାନ୍ଧିବା ଦ୍ୱାରା ଅଗ୍ନିରେ ଇନ୍ଧନ ଯୋଗାଇବା ପରି କାର୍ଯ୍ୟ କରୁଛନ୍ତି । ତଥାକଥିତ ଗଣତନ୍ତ୍ର ପଦ୍ଧତିରେ ତୁଚ୍ଛା ସଂଖ୍ୟା ଗରିଷ୍ଠତା ବଳରେ ନିର୍ଣ୍ଣୟ ଗ୍ରହଣ କରିବା ମଧ୍ୟ ଗ୍ରାମ ଦଳାଦଳିକୁ ଅଧିକତର ତେଜ ଦେଉଛି ।

ସର୍ବସମ୍ମତ ଭିତ୍ତିରେ କାର୍ଯ୍ୟ କରିବା ହିଁ ଏକତାରକ୍ଷା କରିବାର ଓ କ୍ରମେ ଶକ୍ତି ବଢ଼ିବାର ଏକମାତ୍ର ପନ୍ଥା ଏବଂ ଯେଉଁଠି ଏ ପରୀକ୍ଷା କରାଯାଇଛି ସେଠାରେ ଏହା ସଫଳତା ଅର୍ଜନ କରିଛି । ଏହି ପ୍ରଥା ଧୈର୍ଯ୍ୟ ଓ ଅନ୍ୟର ମତପ୍ରତି ସମ୍ମାନ ଲୋକର ମନରେ ଜନ୍ମାଏ ।

---

# ଗ୍ରାମପାଣ୍ଠି

ପ୍ରତ୍ୟେକ ଗ୍ରାମଦାନୀ ଗାଁରେ ଗୋଟିଏ ଗ୍ରାମପାଣ୍ଠିର ପ୍ରତିଷ୍ଠା କରାଯିବ । ଏହି ପାଣ୍ଠିକୁ ପ୍ରତ୍ୟେକ କୃଷୀ ବର୍ଷକୁ ବର୍ଷ ତାଙ୍କର ମୋଟ ଉତ୍ପାଦନର ଚାଳିଶ ଭାଗରୁ ଏକଭାଗ ଦାନ କରିବେ । କୃଷ ବ୍ୟତୀତ ଯେଉଁମାନଙ୍କର ଅନ୍ୟ ଆୟର ପନ୍ଥାଥିବ ସେମାନେ ସେମାନଙ୍କର ବାର୍ଷିକ ଆୟର ତିରିଶ ଭାଗରୁ ଏକଭାଗ ଅର୍ଥ ଆକାରରେ କିମ୍ବା ଶ୍ରମ ଆକାରରେ ଗ୍ରାମପାଣ୍ଠିକୁ ଦାନ କରିବେ । ଏହି ବାର୍ଷିକ ଦେୟର ଅନୁପାତକୁ ବଢ଼ାଇବା ବା କମାଇବାର ଅଧିକାର ଗ୍ରାମସଭାର ରହିବ ଗ୍ରାମପାଣ୍ଠି ଗ୍ରାମସଭା ଦ୍ୱାରା ପରି-ଚାଳିତହେବ । ଗ୍ରାମୋଦ୍ୟୋଗ ବା ଅନ୍ୟ କୌଣସି ଉନ୍ନୟନ ମୂଳକ କାର୍ଯ୍ୟରେ ଏହି ପାଣ୍ଠିକୁ ବ୍ୟବହାର କରାଯାଇପାରେ । ଗ୍ରାମବାସୀମାନେ ଅଳ୍ପ ସୁଧରେ ଏହି ପାଣ୍ଠିରୁ ଋଣ ନେଇ ପାରନ୍ତି । ବୁଢ଼ାବୁଢ଼ୀ ପଙ୍ଗୁ, ବିଧବା କିମ୍ବା ଅନାଥ ବାଳକ ବାଳିକାମାନଙ୍କୁ ଏହି ପାଣ୍ଠିରୁ ସାହାଯ୍ୟ ଦିଆଯାଇ ପାରିବ ।

ପ୍ରତ୍ୟେକ ସରକାର ତାର କାର୍ଯ୍ୟ ଚଳାଇବାକୁ ଆୟର ଉପଯୁକ୍ତ ଚାହେଁ । ଗ୍ରାମପାଣ୍ଠି ଗ୍ରାମସ୍ୱରାଜର ଖଜଣାଖାନା ସ୍ୱରୂପ ହେବ । ମାତ୍ର ଏଥିରେ ଗୋଟିଏ ପ୍ରାର୍ଥକ୍ୟ ରହିବ । ସରକାର ଟିକସକୁ ବାଧ୍ୟତା-ମୂଳକ ଭାବରେ ଆଦାୟ କରନ୍ତି । ମାତ୍ର ଗାଁ-ପାଣ୍ଠିକୁ ଲୋକେ ସ୍ୱତଃ ପ୍ରବୃତ୍ତ ହୋଇ ଶ୍ରଦ୍ଧାର ସହିତ ଚାନ୍ଦା ଦେବେ ।

ବର୍ତ୍ତମାନର ସାମାଜିକ ଓ ଅର୍ଥନୈତିକ ଧାରା ଲୋକଙ୍କର ସଂଗ୍ରହ-ମନୋବୃତ୍ତି ଉପରେ ପର୍ଯ୍ୟବେସିତ । ବର୍ତ୍ତମାନର ସମାଜରେ ପ୍ରତ୍ୟେକ ବ୍ୟକ୍ତି ଅନ୍ୟର ଲାଭକ୍ଷତି ପ୍ରତି ଦୃଷ୍ଟି ନ

ହୋଇ ନିଜେ ନିଜପାଇଁ ବେଶୀ ମାରନେବ ତାହାର ଚେଷ୍ଟାରେ ଲାଗିଛି । ଯଦି ଲୋକେ ନିଜ ମଧ୍ୟରେ ବାଣ୍ଟିକୁଣ୍ଟି ଚଳନ୍ତି ତେବେ ସମାଜବାଦ କୁହ ବା ସର୍ବୋଦୟ କୁହ ଏକ ନୂଆ ସମାଜ-ବ୍ୟବସ୍ଥା କେବଳ ସମ୍ଭବ ହୋଇ ପାରିବ । ଅତଏବ ଦାନ ଏହାର ଗୋଟିଏ ମୌଳିକ ମାନ୍ତ୍ର ହେବ ।

ଏହି ଦାନ ଅବିରାମ ଗତିରେ ଚାଲିଥିବ । ଏଣୁ ପ୍ରତ୍ୟେକ ବ୍ୟକ୍ତି ତାର ଜମିର କିଛି ଅଂଶ ଦାନ ଦେଇ ଚୁପ ରହିଯିବ ତାହା ନୁହେଁ ସେ କିଛି ନା କିଛି ଦେଉଥିବ । ଶ୍ରମିକ ତାହାର ଶ୍ରମ, ବ୍ୟବସାୟୀ ତାର ଅର୍ଥ, ଶିକ୍ଷକ ବା କର୍ମକର୍ତ୍ତା ତାର ମାନସିକ ଶ୍ରମକୁ ଗୋଷ୍ଠୀର ସେବାରେ ଦାନ କରିବ, ଏହିରୂପେ ଗ୍ରାମଟିଏ ଏକ ନୂଆ ସ୍ଫୂର୍ତ୍ତି ଓ ଆଶାର ସଙ୍କେତ ହେବ ।

ଯେତେବେଳେ କି ସେହି ଗ୍ରାମରେ ବାସ କରୁଥିବା ଅନ୍ତତଃ ଶତକଡ଼ା ପଚସ୍ତରି ଭୂମି ମାଲିକ ଓ ଶତକଡ଼ା ପଚସ୍ତରି ସାବାଳକ ବ୍ୟକ୍ତି ପୂର୍ବବର୍ଣ୍ଣିତ ଗୁଡ଼ିଏ ସର୍ତ୍ତକୁ ପାଳିବା ପାଇଁ ସଂକଳ୍ପ ପତ୍ରରେ ସ୍ୱାକ୍ଷର କରନ୍ତି ଏବଂ ଗ୍ରାମବାସୀଙ୍କ ମାଲିକାନାରେ ଥିବା ଶତକଡ଼ା ଏକାବନ ଭାଗ ଭୂମି ଗ୍ରାମସଭାକୁ ଛାଡ଼ି ଦିଅନ୍ତି ସେତେବେଳେ ତାହା ଦାନ ହୁଏ ।

ଗ୍ରାମଦାନୀ ଗାଁର ଆଇନଗତ ସ୍ୱୀକୃତି ମିଳିବା ପାଇଁ ଅନ୍ୟାନ୍ୟ କେତେକ ଆଇନଗତ ବିଧି ବିଧାନ ପୂରଣ କରିବାକୁ ହୁଏ । ଏହି ଆଇନଗତ ଆଗ୍ରହମାନ କାର୍ଯ୍ୟକାରୀ ହେଉଛି କି ଦେଖିବାପାଇଁ ପ୍ରତ୍ୟେକ ରାଜ୍ୟରେ ଗୋଟିଏ ଲେଖାଁଏ ଓ ଉପଯୁକ୍ତ ଭୂଦାନ ବା ଗ୍ରାମଦାନ ବୋର୍ଡ ରହିଛି ।

---

# ତୃତୀୟ ଅଧ୍ୟାୟ

## ଗ୍ରାମଦାନ, ସରକାର ଓ ଯୋଜନା

ସ୍ୱରାଜ ହେବାଠାରୁ ଦେଶର ଯୋଜନାବଦ୍ଧ ବିକାଶ ପାଇଁ ହଜାର ହଜାର କୋଟି ଟଙ୍କା ଖର୍ଚ୍ଚ ହେଲଣି । ବହୁ ବଡ଼ ବଡ଼ ଓ ଗୁରୁତ୍ୱ-ପୂର୍ଣ୍ଣ କାରଖାନା ଓ ଡ୍ୟାମ୍ ମାନ ନିର୍ମିତ ହେଲଣି । ହଜାର ହଜାର ମାଇଲ ନୂଆ ରାସ୍ତା ଓ ରେଳପଥ ପଡ଼ିଲଣି । ଅସଂଖ୍ୟ ସ୍କୁଲ, ହସପିଟାଲ ସ୍ଥାପିତ ହେଲଣି । ଅସଂଖ୍ୟ କୂଅ ଓ ପୋଖରୀ ଖୋଳା ହେଲଣି । ସ୍ୱରାଜ ପୂର୍ବରୁ ଶହେ ବର୍ଷରେ ଯାହା ହୋଇଥିଲା, ତାହାଠାରୁ ଅଧିକ ଏହି ୨୦ ବର୍ଷ ଭିତରେ ହୋଇ ପାରିଛି । ମାତ୍ର ମୌଳିକ ସମସ୍ୟା ସବୁ ପୂର୍ବପରି ରହିଛି ।

ଏପରି ହେବାର କାରଣ ଯୋଜନା ଉପର ମହଲରେ ହୋଇଛି ଓ ମୁଖ୍ୟ ଭାବରେ ସହରପ୍ରତି ଦୃଷ୍ଟି ରଖି ଯୋଜନା କରା ଯାଇଛି । ଯଦିଚ ଭାରତର ଶତକଡ଼ା ପଞ୍ଚଅଶୀ ଜଣ ଗ୍ରାମରେ ରହନ୍ତି, ଗାଁ-ଲୋକଙ୍କ ପ୍ରତି ଖୁବ୍ କମ୍ ଦୃଷ୍ଟି ଦିଆଯାଇଛି । ବିନୋବାଜୀଙ୍କ କଥାରେ "ଉପର ଆଡ଼ୁ ଝରି ଝରି ଯିବା" ନୀତିରେ ଏହା ହୋଇଛି । ମାଟି ଉପରେ ପାଣି ଢାଳି ଗଲେ ଉପରସ୍ତର ପୂରା ଭେଦିଗଲେ (ସଂସିକ୍ତ ହେଲେ) ଯାଇ ତଳକୁ ଝରିପାରେ । ଠିକ୍ ସେହିପରି, ତଳ ଲୋକଙ୍କ ପାଖରେ କିଛି ପହଞ୍ଚିବ,' ଏହି ଆଶାରେ ଉପର ମହଲରେ ଟଙ୍କା ଅଜାଡ଼ି ଦିଆ ଯାଇଛି । ଏହି ପ୍ରକ୍ରିୟାରେ ଧନୀଲୋକ ଅଧିକ ଧନୀ ହୋଇଛନ୍ତି । ମାତ୍ର ଗରିବଙ୍କ ଅବସ୍ଥା ପୂର୍ବପରି ରହିଛି ।

ବ୍ୟବହାରିକ ଅଭିଜ୍ଞତା ନ ଥିବା ଉପରର ଲୋକେ ଏହି ଯୋଜନା କରୁଛନ୍ତି । ଯେଉଁମାନଙ୍କ ଲାଗି ଏ ଯୋଜନା ହେଲା ସେମାନଙ୍କର ଏଥିରେ କିଛି କହିବାର ଅଧିକାର ନ ଥିଲା ଏବଂ ଯୋଜନାକୁ କାର୍ଯ୍ୟକାରୀ କରିବାରେ ମଧ୍ୟ ସେମାନଙ୍କର ଭାଗ ନାହିଁ । ପ୍ରତି କଥା ଅମଲାତନ୍ତ୍ର ହାତରେ ରହିଲା । ଆମ ଦେଶରେ ଏକ ପ୍ରକାର ଗଣତନ୍ତ୍ର ରହିଛି । ଯେତେଦୂର ଏ ଗଲେ, ଭଲ ! ମାତ୍ର ଏ ବେଶୀଦୂର ଯିବନାହିଁ । ଲୋକେ ପାଞ୍ଚ ବର୍ଷରେ ଥରେ ଭୋଟ ଦେଉଛନ୍ତି । ତାପରେ ଆଗାମୀ ନିର୍ବାଚନ ପର୍ଯ୍ୟନ୍ତ ଅବଶିଷ୍ଟ ସମୟଟକ ସେମାନଙ୍କର ଯୋଜନା ଓ ଶାସନ କାର୍ଯ୍ୟରେ ଆଉ କିଛି ହାତ ରହୁନାହିଁ । କେବଳ ଆଶାୟୀ ହୋଇ ବସି ରହିବା ବା ଚିଡ଼ ଭିଡ଼ ହେବା ଛଡ଼ା ସେମାନଙ୍କର ଆଉ କିଛି କହିବାର ନାହିଁ ।

ଲକ୍ଷ ଲକ୍ଷ ଟଙ୍କା ଗ୍ରାମଉନ୍ନୟନରେ ବ୍ୟୟ କରା ଯାଇଛି । ମାତ୍ର ବାଲି ଉପରେ ପାଣି ଢାଳିବାର ଫଳ ପରି ଟଙ୍କାର ଅଧିକାଂଶ ଉଭେଇ ଯାଉଛି । "ଆପେ ବଞ୍ଚିଲେ ବାପର ନାମ" ଅର୍ଥାତ୍ ନିଜ ସ୍ୱାର୍ଥସାଧିତ ଚାଲିଛି । ଏଣୁ ସରକାରୀ ଖର୍ଚ୍ଚରୁ କିଏ ବେଶୀ ମାରି-ନେବ, ସେହି ମତଲବରେ ସମସ୍ତେ ରହିଲେ ।

ଏହାକୁ ସଜାଡ଼ିବାର ଚେଷ୍ଟାରେ ପଞ୍ଚାୟତି ରାଜର ପ୍ରତିଷ୍ଠା କରାଗଲା । ମାତ୍ର ଏହା ମଧ୍ୟ ତାର ଉଦ୍ଦେଶ୍ୟ-ସାଧନରେ ଏ ପର୍ଯ୍ୟନ୍ତ ସଫଳ ହୋଇନାହିଁ । ବିନୋବାଜୀଙ୍କ ମନ୍ତବ୍ୟ ଅନୁସାରେ ଏହା ଘୋଡ଼ା ଆଗରେ ଗାଡ଼ି ଥୋଇବା ପରି ହୋଇଛି । ନୂଆଦିଲ୍ଲୀ ଲକ୍ଷ୍ନୌ ଓ ଭୁବନେଶ୍ୱରରେ ଠୁଳ ହୋଇଥିବା ଶକ୍ତିରୁ ସାମାନ୍ୟ କିଛି ଅଂଶମାତ୍ର ଗାଁ ଗୁଡ଼ିକୁ ଦିଆ ଯାଇଛି । ଗାଁରେ ଥିବା ଧନ

ସମ୍ପତ୍ତି ଉପରେ ଯେଉଁମାନଙ୍କର ଅଧିକାର ଅଛି ଏବଂ କିଛି ପାଠ ପଢ଼ିଛନ୍ତି, ସେହିମାନେହିଁ ଏହି କ୍ଷମତାକୁ ହାତ ନେଇଛନ୍ତି । ସେମାନଙ୍କର ହତଭାଗ୍ୟ ଭାଇମାନଙ୍କୁ ଶୋଷଣ କରିବାରେ ହିଁ ଏମାନେ ନିଜର ଶିକ୍ଷା-ଦୀକ୍ଷା, ଧନ-ସମ୍ପତ୍ତି, ଆଦିର ବଳକୁ ଲଗାଇଛନ୍ତି । ଏବେ ଗରିବ ଲୋକଙ୍କର ଶ୍ୱାସରୋଧକୁ ସମ୍ପୂର୍ଣ୍ଣ କରିବା ପାଇଁ ବର୍ତ୍ତମାନ ସେସବୁ ସାଙ୍ଗକୁ ରାଜନୈତିକ କ୍ଷମତା ଯୋଡ଼ା ଯାଇଛି ।

ଏହି ଶୋଷଣର ଫାଶକୁ ଢିଲା କରିବାକୁ ହେଲେ ଗାଁ ଗୁଡ଼ିକର ଦୃଷ୍ଟିଭଙ୍ଗି ଓ ବାୟୁମଣ୍ଡଳକୁ ଆଗେ ବଦଳାଇବା ଦରକାର । ସେତିକବେଳେ ଯାଇ ପଞ୍ଚାୟତି ରାଜ ଲୋକ ସେବାରେ ସମର୍ଥ ହେବ ।

ଲକ୍ଷ ଲକ୍ଷ ଲୋକଙ୍କର ତ୍ୟାଗ ଯୋଗୁଁ ସ୍ୱରାଜ ଆସିଲା । ତେଣୁ ତାହାର କିଛି ପବିତ୍ରତା ଓ ଶକ୍ତି ଥିଲା । ସେହିପରି ପଞ୍ଚାଏତି ରାଜରେ କିଛି ତ୍ୟାଗଭାବ ରହିଲେ ଯାଇ ତାହା ସଫଳ ହେବ । ଗ୍ରାମଦାନ ଏହି ତ୍ୟାଗ ଓ ଦୃଷ୍ଟିଭଙ୍ଗୀ ଯୋଗାଉଛି ।

ଜମି ମାଲିକମାନେ ସ୍ୱତଃପ୍ରବୃତ୍ତ ଓ ବନ୍ଧୁଭାବାପନ୍ନ ହୋଇ ଭୂମିହୀନଙ୍କ ସହିତ ସେମାନଙ୍କ ଜମିକୁ ବାଣ୍ଟି ଲୁଣ୍ଠି ଭୋଗ-କରିବା ଫଳରେ ଗ୍ରାମମଧ୍ୟରେ ସଦିଚ୍ଛାର ଏକ ନୂତନ ଓ ସତେଜ ବାତା-ବରଣର ସୃଷ୍ଟି ହେବ । ବ୍ୟକ୍ତିଗତ ମାଲିକାନାରୁ ଉଚ୍ଛେଦ ହେବା ଦ୍ୱାରା ସମ୍ପତ୍ତି ଅର୍ଜିବାର ବ୍ୟକ୍ତିବିଶେଷର ଅସୀମ ଲାଳସାର ମଧ୍ୟ ଅବସାନ ହେବ ।

ଭାରତର ଅନେକ ରାଜ୍ୟରେ ତିନିହଜାର ବା ଅଧିକ ଲୋକଙ୍କୁ ନେଇ ଗୋଟିଏ ଗୋଟିଏ ଗ୍ରାମ-ପଞ୍ଚାୟତ ଗଢ଼ା ଯାଇଛି ।

ଏଥିରେ ଦଶରୁ କୋଡ଼ିଏ ପର୍ଯ୍ୟନ୍ତ ଗ୍ରାମ ରହିଛି । ଏହା ପ୍ରକୃତରେ ଗ୍ରାମ ପଞ୍ଚାଏତ ହୋଇ ନ ପାରେ । ଗୋଟିଏ ଗୋଟିଏ ଗ୍ରାମର ଲୋକେ ସେମାନଙ୍କ ହାନି ଲାଭର ବିଚାର କରିବାକୁ କେବେ ଏକାଠି ହୋଇ ପାରିବେନାହିଁ । ପ୍ରତ୍ୟେକ ଗ୍ରାମରୁ ଜଣେ ବା ଦୁଇଜଣ ଲୋକ ପଞ୍ଚାୟତ ନାଁରେ ଏକାଠି ହୁଅନ୍ତି । ରାଜ୍ୟ ସରକାରଙ୍କ ଠାରୁ ମିଳିଥିବା ଅନୁଗ୍ରହକୁ ଭାଗବଣ୍ଟା ପାଇଁ ଜାଲଗୋଳ କରନ୍ତି । ଏହାର ଫଳରେ ପଞ୍ଚାଏତ ବ୍ୟାପାରରେ ଗ୍ରାମର ବାକି ଲୋକେ କିଛି ଜାଣୁନାହାନ୍ତି ବା ଧାର ଧାରନ୍ତି ନାହିଁ । ପାଟଣା ବା ଲକ୍ଷ୍ନୌର ବିଧାନ ସଭା ପରି ଗ୍ରାମ ପଞ୍ଚାଏତ ବି ଲୋକଙ୍କ ଠାରୁ ଦୂରେଇ ରହି ଯାଇଛି ।

ଗୋଟିଏ ମାତ୍ର ଗ୍ରାମର ଲୋକଙ୍କୁ ନେଇ ହିଁ ପ୍ରକୃତ ଗାଁ ପଞ୍ଚାଏତ ଗଢା ଯାଇପାରେ । ତେବେ ଯାଇ ଲୋକେ ଏକାଠି ବସି ସେମାନଙ୍କର ହାନି ଲାଭ କଥା ବିଚାର କରି ପାରିବେ । କେବଳ ସେତିକି ବେଳେ ହିଁ ସେମାନଙ୍କ ଜୀବନର ଭିତ୍ତି ଉପରେ ସ୍ୱରାଜ ପ୍ରତିଷ୍ଠିତ ହେବ ଏବଂ ସେମାନଙ୍କ ଜୀବନ ସ୍ୱାଧୀନ ଯୁକ୍ତହେବ ।

ଗ୍ରାମଦାନୀ ଗ୍ରାମର ଗ୍ରାମ ସଭାହିଁ ପଞ୍ଚାଏତ ରାଜର ତଥା ସ୍ୱରାଜର ମୂଳଦୁଆ ଯୋଗାଏ ।

ଗ୍ରାମଦାନର ଅର୍ଥ ଗ୍ରାମ୍ୟ ସ୍ତରରେ ପ୍ରକୃତ ଯୋଜନାର ଆରମ୍ଭ । ଗ୍ରାମସଭାହିଁ ଅଧିକ ଖାଦ୍ୟ ଉତ୍ପାଦନ ପାଇଁ ଯୋଜନା କରିବ, ଯେପରି କି ଗ୍ରାମ ଦୁଧ, ଫଳମୂଳ, ଶାକସବଜି, ଇତ୍ୟାଦିରେ ଆତ୍ମ ନିର୍ଭରଶୀଳ ହୋଇ ପାରିବ । ଲୋକମାନଙ୍କୁ ଧନ୍ଦା ଯୋଗାଇବା ନିମିତ୍ତ ଏବଂ ଗ୍ରାମରେ ମିଳୁଥିବା କଞ୍ଚାମାଲର ସଦୁପଯୋଗ ପାଇଁ ଗ୍ରାମସଭାକୁ କ୍ଷୁଦ୍ରଶିଳ୍ପ ପ୍ରତିଷ୍ଠା କରିବାକୁ ହେବ ।

ନିସ୍ୱ ବିଜୟ ସମବାୟ ସୂତ୍ରରେ ହେବ । ବାଳକ ବାଳିକାଙ୍କୁ ଏପରି ଶିକ୍ଷା ଦିଆଯିବ, ଯେପରିକି ସେମାନେ ଉତ୍ପାଦନକାରୀ ଓ ହିତକାରୀ ନାଗରିକ ହୋଇ ପାରିବେ ।

ଗ୍ରାମର ସ୍ୱାସ୍ଥ୍ୟ, ପରିଷ୍କାର ପରିଚ୍ଛନ୍ନତା, ପର୍ବ ପର୍ବାଣି, ବାହାବ୍ରତ, କଳିଆ ନିଷ୍ପତ୍ତି, ଇତ୍ୟାଦି ଗ୍ରାମର ସବୁ କିଛି ଗ୍ରାମସଭା ହିଁ ଯୋଜନା-ବଦ୍ଧ ଭାବରେ ପରିଚାଳନା କରିବ । ନିଶାପାଣିରେ ସଫଳ ନିଷେଧ ବି ଗ୍ରାମସଭାର ଏକ ପ୍ରଧାନ କର୍ତ୍ତବ୍ୟ ହେବ ।

ବର୍ତ୍ତମାନ ଗ୍ରାମମାନଙ୍କର କୌଣସି ସ୍ୱାଧୀନତା ନାହିଁ କିମ୍ବା ଅଭିକ୍ରମ ବି ନାହିଁ । ଉପରେ ସବୁ ଶକ୍ତି କେନ୍ଦ୍ରିତ ହୋଇ ରହିଛି । ଗ୍ରାମଦାନ ହିଁ ଗ୍ରାମ-ସ୍ୱରାଜ୍ୟର ଭିତ୍ତି ସ୍ଥାପନା କରିଛି, ଯାହା ଫଳରେକି ନିଜର ହାନି-ଲାଭ ବୁଝିବାକୁ ଗାଁଗୁଡ଼ିକର ଯଥେଷ୍ଟ ସ୍ୱାଧୀନତା ରହିବ ଏବଂ ଉପରୁ ହସ୍ତକ୍ଷେପ ଖୁବ୍ କମିଯିବ । ସରକାରଙ୍କ ପାଖରେ ଗ୍ରାମର ଯେ ଦଲିଲ—ଦସ୍ତାବିଜ, ଖତିଆନ ରହିବ ତହିଁରେ କେବଳ ଏତିକି ଦରଜ ରହିବ ଯେ ଅମୁକ ଗାଁରେ ମୋଟରେ ଏତେ ଜମିଅଛି । ଏତକ ଲେଖାଥିବା ଖଣ୍ଡିଏ ମାତ୍ର ପଟ୍ଟା ଗାଁକୁ ମିଳିବ ଏବଂ ସରକାରଙ୍କଠାରେ ଥିବା ରେକର୍ଡ଼ରେ ସେ ଗାଁର ଗୋଟିଏ ମାତ୍ର ଦରଜ ରହିବ ।

ଏହାର ଫଳରେ ସରକାରଙ୍କ ରାଜସ୍ୱ ବିଭାଗ, ରେଜିଷ୍ଟ୍ରେସନ ଅଫିସ ଓ ଅଦାଲତ ସହିତ ସମ୍ପର୍କ ବାସ୍ତବରେ ତୁଟିଯିବ । ଗ୍ରାମର ଜମିଜମା ରେକର୍ଡ଼ମାନ ଗ୍ରାମସଭା ହାତରେ ରହିବ; ଦଖଲରେ ଯାହାକିଛି ପରିବର୍ତ୍ତନ ତାହା ଗ୍ରାମସଭାର ରେକର୍ଡ଼ରେ ନୋଟ୍ କରାଯିବ ।

ପୋଲିସ ଥାନାକୁ ବା କଚେରିକୁ ନଯାଇ ଲୋକେ ଗ୍ରାମର କଳିଗୋଳ ଶାନ୍ତିରେ ଆପୋଷରେ ମେଣ୍ଟାଇ ଦେବାକୁ ଚେଷ୍ଟା କରିବେ । ଗାଁର ଧନ ବାହାରି ଯିବାର ଗୋଟିଏ ପ୍ରଧାନ କାରଣ ହେଉଛି ମାଲି ମକଦ୍ଦମା । ଯେଉଁ ହଜାର ହଜାର ଗାଁ ଗ୍ରାମଦାନ ହୋଇଛି, ସେଥିରୁ ମକଦ୍ଦମା ସବୁ ଲୋପ ହୋଇ ଗଲାଣି । ପ୍ରତିଗାଁ-ରେ କେତେକ ଶାନ୍ତି ସୈନିକ ଓ ଶାନ୍ତି ସେବକ ରହିବେ । ଶାନ୍ତି ରକ୍ଷା ଏବଂ ଅପରାଧ ନିବାରଣ ଏମାନଙ୍କର କର୍ତ୍ତବ୍ୟ ହେବ ।

ଗ୍ରାମଶିଳ୍ପ ଉନ୍ନୟନ ଫଳରେ ଗ୍ରାମମାନେ ବଡ଼ ପୁଞ୍ଜିପତି ଓ ବ୍ୟବସାୟୀଙ୍କ କବଳରୁ ମୁକ୍ତି ପାଇବେ । ଖଦୀ ବିଷୟକ ଅଧ୍ୟାୟରେ ଏ ବିଷୟରେ ଅଧିକ ଚର୍ଚ୍ଚା କରାଯିବ ।

ଉପରୁ ସରକାରଙ୍କ ଆଡ଼ୁ ଉପକାର ପାଇବାକୁ ଆଶାକରି ବସି ରହିବାର ଅଭ୍ୟାସ ଲୋକଙ୍କର ହୋଇ ଯାଇଛି । ଲୋକେ ଭାବନ୍ତି ଯେ ଯାହା କିଛି ସରକାରଙ୍କଠାରୁ ଆସୁଛି ତାହାସବୁ ଦାନଖଇରାତ ସୂତ୍ରେ ଆସୁଛି । ମାତ୍ର ଏହା ସତ୍ୟନୁହେଁ । ସରକାର ଯାହାକିଛି ଖର୍ଚ୍ଚ କରୁଛି, ସେ ସବୁକୁ ଟିକିନିକି ଟିକସ ଆକାରରେ, ବିଶେଷ କରି ଅପ୍ରତ୍ୟକ୍ଷ ଟିକସ ଆକାରରେ, ଆଦାୟ କରୁଛି । ଲୁଗା, ଚିନି, କିରାସିନି, ପ୍ରଭୃତି ଉପରେ ଏକ୍‌ସାଇଜ ଡିଉଟି ଏହାର ଉଦାହରଣ । ଯେଉଁ ସରକାରୀ କଳ ଦ୍ୱାରା ଏ ଟଙ୍କା ଆଦାୟ ଓ ଖର୍ଚ୍ଚ କରାଯାଉଛି, ତାହାର ପିଛା ଗୋଟିଏ ବଡ଼ ଭାଗ ଚାଲିଯାଏ । ଏଥିରୁ ସରକାର ଯଦି ଟଙ୍କାଟିଏ ଆପଣଙ୍କଠାରୁ ଟିକସ ଆକାରରେ ନିଅନ୍ତି ସେହି ଟଙ୍କାଟିରୁ ପ୍ରାୟ ୪୦ ପଇସା ଶାସନ କଳରେ ଖର୍ଚ୍ଚ ହୋଇଯାଏ । ଯେଉଁମାନେ ଏହାକୁ ଖର୍ଚ୍ଚ କରନ୍ତି, ସେମାନେ କେତେ ଯେ ନଷ୍ଟ କରନ୍ତି ଓ ଚୋରି କରି

ନଥାନ୍ତ ତାହା ଠିକ୍ ଜଣା ନାହିଁ । ଏହା ଉପରକୁ କଣ୍ଟ୍ରାକ୍ଟରମାନଙ୍କ ଲାଭ ତ ଅଛି, ଏସବୁକୁ ବାଦଦେଲେ ଲୋକଙ୍କ ପାଖକୁ ଅତି ବେଶୀ ହେଲେ ୩୦ଟି ମାତ୍ର ପଇସାର ଉପକାର ଆସିଥାଏ ।

ପକ୍ଷାନ୍ତରେ ଗ୍ରାମସଭା ନିଜେ ଯଦି ଗ୍ରାମର ଟଙ୍କା ଉଠାଏ ଓ ଖର୍ଚ୍ଚକରେ ତେବେ ଅତି କମ୍‌ରେ ୯୦ ପଇସା ଲୋକଙ୍କର ପ୍ରକୃତ ବ୍ୟବହାରରେ ଲାଗେ । ସରକାରୀ କାରବାରରେ ଯେଉଁ ଅଜସ୍ର ଅପବ୍ୟୟ ଚାଲିଛି, ତାକୁ ବନ୍ଦ କରିବାର ଏକମାତ୍ର ପନ୍ଥା ହେଉଛି ଗ୍ରାମସ୍ୱରାଜ୍ୟ ।

## ବ୍ଳକଦାନ

ବ୍ଳକଦାନର ନୂଆଭାବ ଗ୍ରାମସ୍ୱରାଜକୁ ଆଉ ପାହାଚେ ଅଧିକା ନେଇ ଯାଉଛି । ଜଳସେଚନ, ମଧ୍ୟମ ଆକାରର ଶିଳ୍ପ, ମାଧ୍ୟମିକ ଶିକ୍ଷା, ପ୍ରଭୃତି ଉନ୍ନୟନର କେତେକ କାର୍ଯ୍ୟକ୍ରମ ରହିଛି, ଯାହା ପାଇଁ ଗ୍ରାମ ଅପେକ୍ଷା ବୃହତ୍ତର ଏକକ ଲୋଡ଼ା । ବ୍ଳକ ଶାସନର ଏକ ପ୍ରଧାନ ଏକକ ଅଟେ । ବ୍ଳକର ସବୁ ବା ଅଧିକାଂଶ ଗ୍ରାମ ଯେତେବେଳେ ଗ୍ରାମଦାନୀ ହୋଇଯାଏ, ସେତେବେଳେ ଗ୍ରାମସ୍ୱରାଜ ଭିତରେ, ପଞ୍ଚାଏତ ସମିତି ବା ବ୍ଳକ ପଞ୍ଚାଏତ କାର୍ଯ୍ୟ କରିପାରିବ ।

ଲୋକଙ୍କର ପ୍ରକୃତ ପ୍ରୟୋଜନର ଭିତ୍ତି ଉପରେ ଲୋକଙ୍କ ଦ୍ୱାରା ଯୋଜନାକୁ ରୂପ ଦିଆଯାଇ ପାରେ ଏବଂ ଏହି ଯୋଜନା-ସବୁକୁ କାର୍ଯ୍ୟକାରୀ କରିବାକୁ ଗ୍ରାମଦାନୀ ଗ୍ରାମସବୁର ଲୋକ-ମାନଙ୍କ ଏକତା ଓ ଉତ୍ସାହକୁ ଏ ଦିଗରେ ଚାଳିତ କରାଯାଇ ପାରେ ।

ବର୍ତ୍ତମାନ ସୁଦ୍ଧା ସର୍ବମୋଟ ଦୁଇଶ ଦୁଇଗୋଟି ବ୍ଲକଦାନ ହୋଇଗଲାଣି ଏବଂ ଅଳ୍ପକାଳ ମଧ୍ୟରେ ଆହୁରି ଶହ ଶହ ବ୍ଲକଦାନ ହୋଇପାରେ । ଦରଭଙ୍ଗା ଜିଲାର ଚଉଦ୍ରିଶଟି ଯାକ ବ୍ଲକଦାନ ହେବାଦ୍ୱାରା ଏହା ଭାରତର ପ୍ରଥମ ଜିଲାଦାନ ହୋଇଛି ଓ ଏହି ଜିଲାଦାନ କଳ୍ପନା ଅନ୍ୟତ୍ର ମଧ୍ୟ ଲୋକଙ୍କ ମନକୁ ଛୁଇଁଲାଣି । ବିହାରର ସର୍ବୋଦୟ କର୍ମୀମାନେ ସମଗ୍ର ବିହାର ରାଜ୍ୟକୁ ଗ୍ରାମଦାନ କରାଇ ନେବାକୁ ସଙ୍କଳ୍ପ କରିଛନ୍ତି ।

ଯଦି ଲକ୍ଷ ଲକ୍ଷ ଗ୍ରାମଦାନ ହୋଇଯାଏ, ଯୋଜନା ଓ ଶାସନ ଉପରେ ଏହାର କି ପ୍ରଭାବ ପଡ଼ିବ, ତାହା ଅନୁମାନ କରାଯାଇ ପାରେ । ଏହା ଉଭୟର ପ୍ରକୃତିରେ ମୌଳିକ ପରିବର୍ତ୍ତନ ଆଣିବ । ସେତେବେଳେ ପଦଦଳିତ ଜନତାର ସ୍ୱାର୍ଥରକ୍ଷା ସର୍ବ ପ୍ରଧାନ କାର୍ଯ୍ୟ ହେବ ଏବଂ ତାହା ଗ୍ରାମଦାନ ଆନ୍ଦୋଳନର ସର୍ବଶେଷ ଲକ୍ଷ୍ୟ ଅଟେ ।

---

# ଚତୁର୍ଥ ଅଧ୍ୟାୟ

## ଗ୍ରାମଦାନ ଓ ପ୍ରତିରକ୍ଷା ବ୍ୟବସ୍ଥା

ଉଣେଇଶ ବାଷଠି ମସିହା ଅକ୍ଟୋବର ମାସ । ଚୀନର ସୈନ୍ୟବାହିନୀ ଲଦାଖ୍ ଓ ନେଫା ଆଡକୁ ମାଡ଼ି ଚାଲିଥାନ୍ତି । ସମଗ୍ର ଦେଶରେ ଉତ୍ତେଜନା ଘୋଟି ଯାଇଥାଏ । ସେତେବେଳେ ବିନୋବାଜୀ ପଶ୍ଚିମ ବଙ୍ଗଳାରେ ପଦଯାତ୍ରା କରୁଥାନ୍ତି । ଯୁଦ୍ଧ-ସମ୍ବାଦ ଶୁଣି ସେ ବଜ୍ର-ଘୋଷରେ ପ୍ରକାଶ କଲେ ଯେ ଦେଶକୁ ରକ୍ଷା କରିବାପାଇଁ ଗ୍ରାମଦାନ ସର୍ବୋତ୍ତମ ଉପାୟ ।

ବହୁ ଲୋକଙ୍କୁ ଏ କଥା ସମ୍ପୂର୍ଣ୍ଣ ନୂଆ ଓ ଅଦ୍ଭୁତ ଜଣାଗଲା । କିନ୍ତୁ ବିନୋବାଜୀଙ୍କ ପାଇଁ ଏହା ନୂଆ ନ ଥିଲା । ୧୯୫୭ରେ ବିନୋବାଜୀ ଏଲୱାଲ୍ ସମ୍ମିଳନୀରେ ସନବନ୍ଧ ଅନୁରୋଧ କରିଥିଲେ ଯେ ବିଦେଶୀ ଆକ୍ରମଣର ବିରୋଧରେ ପ୍ରତିରକ୍ଷାକୁ ଶକ୍ତିଶାଳୀ କରିବା ନିମନ୍ତେ ସମଗ୍ର ଦେଶରେ ଖୁବ୍ ଶୀଘ୍ର ଗ୍ରାମଦାନକୁ କାର୍ଯ୍ୟକାରୀ କରାଯାଉ ।

ବିନୋବାଜୀ କହିଥିଲେ, "ପୃଥିବୀରେ ଶାନ୍ତି ଅବ୍ୟାହତ ରହିବାର ପରିକଳ୍ପନା କରି ଆମର ଯୋଜନା ଗଢ଼ା ଯାଇଛି । ମାତ୍ର ଯଦି ପୃଥିବୀର ଶାନ୍ତିଭଙ୍ଗ ହୁଏ କିମ୍ବା ଭାରତ ଯଦି ଯୁଦ୍ଧରେ ଜଡ଼ିତ ହୋଇପଡ଼େ ତେବେ କ'ଣ ଘଟିବ ? ସେତେବେଳେ ବିଦେଶ ସହିତ ଆମର ବାଣିଜ୍ୟ କାରବାର ବନ୍ଦ ହୋଇଯିବ । ଦେଶ ଭିତରେ ବି ବ୍ୟବସାୟ ବାଣିଜ୍ୟକୁ ଧକ୍କା ଲାଗିବ । ସେତେବେଳେ ଆମର ସବୁ ଯୋଜନା କାମ ବି ଅଚଳ ହୋଇଯିବ ।

ଯୁଦ୍ଧବେଳେ ଆମର ପଞ୍ଚବାର୍ଷିକ ଯୋଜନା ସବୁ ଅକାମୀ ହୋଇ-ପଡ଼ିବ ।”

୧୯୬୫ରେ ପାକସ୍ତାନ ସହ ଆମର ସଂଘର୍ଷ ଅଳ୍ପକ୍ଷଣସ୍ଥାୟୀ ହେଲେ ସୁଦ୍ଧା ଏହା ଅତି ସାଂଘାତିକ ଭାବରେ ଆମର ଅର୍ଥନୀତି ଉପରେ ଆଞ୍ଚ ସୃଷ୍ଟି କରିଥିଲା । ବଡ଼ ଧରଣର ସଂଘର୍ଷ ଘଟିଲେ କମ୍ବା ବିଶ୍ୱଯୁଦ୍ଧ ହେଲେ, ଅବସ୍ଥା ଯେ ଅଧିକତର ସାଂଘାତିକ ହେବ, ତା’ର ଏକ ପୂର୍ବାନୁଭବ ଏହି ଅଳ୍ପକ୍ଷଣସ୍ଥାୟୀ ସଂଘର୍ଷରୁ ହୋଇ ସାରିଛି ।

ବ୍ୟବସାୟ କାରବାରରେ ବିଶୃଙ୍ଖଳା ଘଟିଲେ ଲୋକଙ୍କୁ ନିତ୍ୟ-ବ୍ୟବହାର୍ଯ୍ୟ ବସ୍ତୁ ଯୋଗାଇବାରେ ବାଧାଘଟେ । ଫଳରେ, ଲୋକଙ୍କର କଷ୍ଟ ଏବଂ ଅସନ୍ତୋଷ ବୃଦ୍ଧିପାଏ ଏବଂ ତାହାର ଫଳରେ ଲୋକଙ୍କର ମନୋବଳ ଭାଙ୍ଗିପଡ଼େ । ଯଦି ଗ୍ରାମ ଓ ବ୍ଲକସବୁ ଗ୍ରାମଦାନର ଭିତ୍ତି ଉପରେ ସଂଗଠିତ ହୁଅନ୍ତି ତେବେ ସେଗୁଡ଼ିକ ଖାଦ୍ୟ, ବସ୍ତ୍ରାଦି ଯାବତୀୟ ନିତ୍ୟ-ବ୍ୟବହାର୍ଯ୍ୟ ସାମଗ୍ରୀରେ ଆତ୍ମନିର୍ଭରଶୀଳ ହେବ ଏବଂ ପରିବହନ ଓ ବାଣିଜ୍ୟ ସମ୍ପର୍କ ଛିଣ୍ଡିଗଲେ ବି ଗାଁଗୁଡ଼ିକୁ ଅତି ଅଳ୍ପ ବାଧିବ ।

ଦ୍ୱିତୀୟତଃ ଦେଶରେ ଶାନ୍ତିରକ୍ଷା କାର୍ଯ୍ୟ ପାଇଁ ଆଜିକାଲି ଏକ ବଡ଼ ପୋଲିସ-ବାହିନୀ ଦରକାର ହେଉଛି ଏବଂ ଅନେକ ସମୟରେ ପୋଲିସକୁ ସାହାଯ୍ୟ କରିବାକୁ ସେନାବାହିନୀର ଆବଶ୍ୟକତା ପଡ଼ୁଛି । ପୋଲିସ ଓ ସୈନ୍ୟବାହିନୀର ବିନା ସାହାଯ୍ୟରେ ନିଜ ନିଜ ଅଞ୍ଚଳରେ ଶାନ୍ତିରକ୍ଷା କରିବାର ଦାୟିତ୍ୱ ଗ୍ରାମଦାନ ଦ୍ୱାରା ସମ୍ଭବ ହୋଇପାରିବ । ଏହାଦ୍ୱାରା ପୋଲିସ ଓ

ସୈନ୍ୟବାହିନୀ ଉକ୍ତ ଦାୟିତ୍ୱରୁ ମୁକ୍ତ ହୋଇ ଅଧିକତର ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ କରିବାକୁ କ୍ଷମ ହେବେ ।

ଦେଶର ସଫଳ ପ୍ରତିରକ୍ଷା ପାଇଁ ଏହା ଅତ୍ୟନ୍ତ ଆବଶ୍ୟକ ଯେ କେବଳ ସମସ୍ତ ଦେଶ ନୁହେଁ, ଦେଶରେ ଥିବା ପ୍ରତ୍ୟେକ ଗ୍ରାମ ନ ହେଲେ ସୁଦ୍ଧା ପ୍ରତ୍ୟେକ ଅଞ୍ଚଳ ଖାଦ୍ୟ ବିଷୟରେ ସ୍ୱାବଲମ୍ବୀ ହେବା ଦରକାର । ଦୁଇବର୍ଷ ପାଇଁ ଯଥେଷ୍ଟ ହେବା ଭଳି ଖାଦ୍ୟଶସ୍ୟ ସଞ୍ଚିତ ଥିବା ଦରକାର ବୋଲି ବିନୋବାଜୀ ଜୋର ଦେଉଛନ୍ତି । ଏହାଦ୍ୱାରା କେବଳ ଗୋଟି ଗୋଟିକା ଗ୍ରାମର ଯେ ଅର୍ଥନୈତିକ ଦୃଢ଼ତା ଆସିଯିବ ତାହା ନୁହେଁ, ସମଗ୍ର ଦେଶର ଅର୍ଥନୈତିକ ଦୃଢ଼ତା ଆସିଯିବ । ଏସବୁ କେବଳ ଗ୍ରାମଦାନ ଦ୍ୱାରା ସମ୍ଭବ ହୋଇ ପାରେ ।

ଭାରତରେ ଆଜ ଚୀନା ଆକ୍ରମଣର ଭୟ ରହିଛି । ଚୀନ ଠାରୁ ବିପଦ ଭାରତର କେବଳ ସୀମାନ୍ତ ଅଞ୍ଚଳରେ ନାହିଁ, ଭାରତର ପ୍ରତ୍ୟେକ ଗ୍ରାମରେ ଏହି ପ୍ରଚ୍ଛନ୍ନ ବିପଦ ରହିଛି । ସମଗ୍ର ଭାରତ ବା ଭାରତର ବଡ଼ ଖଣ୍ଡେ ଅଂଶ ଚୀନ ତାହାର ସୈନ୍ୟ-ବାହିନୀ ଦ୍ୱାରା ଅଧିକାର କରି ପାରିବ ନାହିଁ । ଚୀନା ନେତାମାନେ ସେପରି ଯୋଜନା କରୁନାହାନ୍ତି । ସେମାନେ ଭାରତରେ ଏକ କମ୍ୟୁନିଷ୍ଟ ବିପ୍ଳବ ଘଟାଇବାକୁ ଚାହାନ୍ତି । ତାହା ହେଲେ ଭାରତର ସେତେବେଳର କମ୍ୟୁନିଷ୍ଟ ସରକାର ଚୀନର ଆଜ୍ଞାବହ ହୋଇ ରହିବ ।

ଅସ୍ତ୍ରଶସ୍ତ୍ର ବଳରେ ଗୋଟିଏ ସୈନ୍ୟବାହିନୀକୁ ସୀମା ଠାରେ ଅଟକେଇ ଦେଇ ହେବ ମାତ୍ର ଭାବର, ବିଚାରର ଅନୁପ୍ରବେଶକୁ ଅଟକାଇ ହେବ ନାହିଁ । ଯେପର୍ଯ୍ୟନ୍ତ ଦେଶର ଦାରିଦ୍ର୍ୟ, କ୍ଷୁଧା,

ଶୋଷଣ ଏବଂ ଅନ୍ୟାୟ ରହିଛି, ସେପର୍ଯ୍ୟନ୍ତ ହିଂସାତ୍ମକ ବିପ୍ଳବ ପ୍ରତି ଲୋକଙ୍କର ଆକର୍ଷଣ ରହିଥିବ । ସେପରି ଅବସ୍ଥାରେ ଭାରତର ପ୍ରତ୍ୟେକ ଗ୍ରାମରେ ଚୀନ ଓ ଆମେରିକା ଦେଖାଦେବ ବୋଲି ବିନୋବାଜୀ ଭବିଷ୍ୟତ ବାଣୀ କରିଛନ୍ତି ।

ଆମେରିକା ଓ ଚୀନ ପ୍ରତ୍ୟେକ ନିଜ ନିଜ ମନମୁତାବକ ପୃଥିବୀ ଗଢ଼ିବାକୁ ଚାହାନ୍ତି । ସେଥିପାଇଁ ଦୁହିଁଙ୍କ ମଧ୍ୟରେ ଅହି-ନକୁଳ ଶତ୍ରୁତା । ଚୀନର ନେତାମାନେ ଅର୍ଥନୈତିକ ଓ ସାମାଜିକ ସମତା ଆଣିବାକୁ ଚାହାନ୍ତି । ଏହା ଘଟାଇବାକୁ ବସି ଯଦି ବ୍ୟକ୍ତି ସ୍ୱାଧୀନତା ଓ ଗଣତନ୍ତ୍ରକୁ ବଳି ଦିଆଯାଏ, ତେବେ ସେଥିପାଇଁ ସେମାନଙ୍କର ଖାତର ନାହିଁ । ଯୁକ୍ତରାଷ୍ଟ୍ରର ବର୍ତ୍ତମାନର ନେତାମାନେ ବ୍ୟକ୍ତି ସ୍ୱାଧୀନତା ଓ ଗଣତନ୍ତ୍ରକୁ ଗୁରୁତ୍ୱ ଦିଅନ୍ତି ଏବଂ ଏହାଦ୍ୱାରା ଅର୍ଥନୈତିକ ସାମ୍ୟ ନ ରହିଲେ ଓ ଶୋଷଣ ଚାଲିଥିଲେ ସେମାନେ ବ୍ୟସ୍ତ ନୁହନ୍ତି । ଉଭୟ ଦେଶ ଭାରତର ଜନତାକୁ ପ୍ରଭାବିତ କରିବାକୁ ଚେଷ୍ଟା କରୁଛି । ଚୀନ ଯେପରି ଲଦାଖରେ ହଜାର ହଜାର ବର୍ଗ କିଲୋମିଟର ଭୂମି ଅଧିକାର କରି ବସିଛି, ସେହିପରି ଯୁକ୍ତରାଷ୍ଟ୍ର ଆମର ଅର୍ଥନୀତି କ୍ଷେତ୍ରରେ କେତେକ ଗୁରୁତ୍ୱପୂର୍ଣ୍ଣ ଘାଟି ଅଧିକାର କରିବାକୁ ସତତ ଚେଷ୍ଟା କରୁଛି ।

ଅର୍ଥନୈତିକ ସମାନତା, ବ୍ୟକ୍ତିଗତ ସ୍ୱାଧୀନତା ଓ ଗଣତନ୍ତ୍ର ଏହି ତିନୋଟିଯାକ ମନୁଷ୍ୟ ଜାତିର ଭବିଷ୍ୟତ ମଙ୍ଗଳପାଇଁ ଅତି ଗୁରୁତ୍ୱପୂର୍ଣ୍ଣ ଓ ମୂଲ୍ୟବାନ୍ ବସ୍ତୁ ଅଟେ । ଆମେରିକାବାସୀ ଓ ଚୀନା ମାନେ ଏ ଗୁଡ଼ିକୁ ଯେପରି ପରସ୍ପର-ବିରୋଧୀ ମନେ କରନ୍ତି, ଆମମାନଙ୍କର ବିଶ୍ୱାସ ଯେ ସେଗୁଡ଼ିକ ସେପରି ପରସ୍ପର-ବିରୋଧୀ ନୁହେଁ । ଯଦି ଅହିଂସକ ଉପାୟ ଅବଲମ୍ବନ କରାଯାଏ, ତେବେ

ଏସବୁ ଆଦର୍ଶ ହାସଲ କରିବା ସମ୍ଭବ । ଗ୍ରାମଦାନ ସଦିଚ୍ଛା ଓ ବ୍ୟବହାରିକ ବୁଦ୍ଧିଦ୍ୱାରା ଗ୍ରାମରେ ଥିବା ପରସ୍ପର-ବିରୋଧୀ ସ୍ୱାର୍ଥର ସମାଧାନ କରିଦିଏ । ଏହା ଚୀନର ଓ ଆମେରିକାର ଆଦର୍ଶବାଦପ୍ରତି ଥିବା ଆକର୍ଷଣକୁ ଏକାସଙ୍ଗେ ଶେଷ କରିଦିଏ ।

ଏଣୁ ଗ୍ରାମଦାନହିଁ ପ୍ରକୃତରେ ଏକ ଗୁରୁତ୍ୱପୂର୍ଣ୍ଣ ପ୍ରତିରକ୍ଷା ବ୍ୟବସ୍ଥା ଅଟେ । ବିନୋବାଜୀ ଏକଦା କହିଥିଲେ, "କେବଳ ଗ୍ରାମଦାନ ଯେ ଦେଶକୁ ରକ୍ଷା କରିବ ଏହା ଆମେ ଦାବୀ କରୁନାହୁଁ ।" ଗ୍ରାମଦାନ ଉପରନ୍ତୁ, ଅନ୍ୟ ଅନେକ ବିଷୟ ଦେଶର ପ୍ରତିରକ୍ଷା ପାଇଁ ଆବଶ୍ୟକ । କିନ୍ତୁ ଯେପର୍ଯ୍ୟନ୍ତ ଗ୍ରାମଦାନ ନ ହୋଇଛି ସେପର୍ଯ୍ୟନ୍ତ ଅନ୍ୟାନ୍ୟ ଯେତେ ଯାହା ବ୍ୟବସ୍ଥା କଲେ ସୁଦ୍ଧା ତାହା ଦେଶକୁ ରକ୍ଷା କରିବ ନାହିଁ ବୋଲି ଆମେ ଜୋର ଦେଇ ଦାବୀ କରୁଛୁ ।

# ପଞ୍ଚମ ଅଧ୍ୟାୟ

## କେତେକ ସମସ୍ୟା

ଆମ ଗାଁମାନଙ୍କରେ ତିନିଶ୍ରେଣୀର ଲୋକେ ଯଥା:—(୧) ଭୂମିଥିବା କୃଷକ, ଗରିବ କୃଷକ, (୨) ମଜୁରିଆ ଓ (୩) ବ୍ୟବସାୟୀ ଓ ମହାଜନ ବାସ କରନ୍ତି । ଏ ପ୍ରତ୍ୟେକ ଶ୍ରେଣୀର ହାତରେ ସମୂହକଲ୍ୟାଣ ପାଇଁ କିଛି ନା କିଛି ଶକ୍ତି ବା ସମ୍ବଳ ରହିଛି । ଶ୍ରମଜୀବି ହାତରେ ଶ୍ରମଶକ୍ତି ରହିଛି, ବ୍ୟବସାୟୀ ଓ ମହାଜନମାନଙ୍କର ପୁଞ୍ଜି ଓ ପରିଚାଳନା ଶକ୍ତି ରହିଛି । ଗ୍ରାମର ବିକାଶ ଓ ମଙ୍ଗଳ ପାଇଁ ଏହି ତିନିଟିଯାକ ଲୋଡ଼ା । ଗ୍ରାମଦାନ ଏହି ତିନିଟିକୁ ଏକଜୁଟ କରିବାକୁ ଚାହେଁ ।

କେତେକ ବଡ଼ ଜମିମାଲିକ ଗ୍ରାମଦାନରେ ଯୋଗ ଦେବାକୁ ଆଶଙ୍କା କରନ୍ତି । ସେମାନେ ଭାବନ୍ତି ଯେ ସେମାନଙ୍କର ସନ୍ତାନ—ସନ୍ତତିଙ୍କର ଶିକ୍ଷା, ବିବାହ ଇତ୍ୟାଦିରେ ବହୁ ଖର୍ଚ୍ଚର ଦାୟ ଅଛି; ଏଣୁ ସେମାନଙ୍କ ଜମିର ଗୋଟିଏ ମୁଖ୍ୟଅଂଶ ସେମାନେ ଛାଡ଼ି ପାରିବେ ନାହିଁ । ସେମାନଙ୍କର ଭୟ ଦୂର କରିବା ଉଦ୍ଦେଶ୍ୟରେ ଗ୍ରାମଦାନକୁ ପରିବର୍ତ୍ତିତ ଓ ସୁଲଭ କରାଯାଇଛି । ଗ୍ରାମଦାନରେ ସେମାନଙ୍କ ଜମିର କୋଡ଼ିଏ ଭାଗରୁ ଭାଗେ ମାତ୍ର ହିଁ ସେମାନଙ୍କୁ ଛାଡ଼ିବାକୁ ପଡ଼ିବ । ଗ୍ରାମଦାନର ମହତ୍ ଲକ୍ଷ୍ୟର ତୁଳନାରେ କୋଡ଼ିଏ ଭାଗରୁ ଭାଗେ ଜମି ଛାଡ଼ିଦେବା ଅତି ସାମାନ୍ୟ ତ୍ୟାଗ ଅଟେ ।

ଶ୍ରମିକମାନଙ୍କ ସମ୍ପର୍କରେ ଅନ୍ୟ ଏକ ଭୟ ରହିଛି । ଅନେକ ଅନୁଭବ କରନ୍ତି ଯେ ଯଦି ଶ୍ରମିକମାନଙ୍କ ଠାରୁ କାମ ଆଦାୟ

କରିବାକୁ ହୁଏ ତେବେ ସେମାନଙ୍କୁ ଭୂମିହୀନ, ଦରିଦ୍ର ଓ ମୂର୍ଖ କରି ଭୂମିମାଲିକଙ୍କ ହାତ ମୁଠାରେ ରଖିବାକୁ ହେବ । ଏହି ବିଶ୍ୱାସ ଶତାବ୍ଦି ଶତାବ୍ଦି ଧରି ଗଡ଼ିଆସୁଛି । ଦିନେ ଦାସତ୍ୱ-ପ୍ରଥା ସମାଜରେ ଚାଲୁ ରହିଥିଲା । ମୂଲିଆଙ୍କୁ ଗୋରୁ ଗାଈଙ୍କ ପରି ରଖିଲେ ଓ ବ୍ୟବହାର କଲେ ଯାଇଁ ସେମାନଙ୍କଠାରୁ କାମ ଆଦାୟ କରାଯାଇ ପାରିବ ବୋଲି ଧାରଣା ଥିଲା । ଏହି' କାରଣରୁ ଦାସତ୍ୱପ୍ରଥା ଅବଲମ୍ବନ କରା ଯାଇଥିଲା । ବର୍ତ୍ତମାନ କିନ୍ତୁ ଏ ସକଳ ନିର୍ବୋଧ ଧାରଣା ବଦଳି ଗଲାଣି । ଯେକୌଣସି ସମୃଦ୍ଧ ଅଗ୍ରଗାମୀ ଦେଶକୁ ଗଲେ ଆପଣ ଦେଖିବେ ଯେ ସେଠାର ଶ୍ରମିକମାନେ ଅନ୍ୟମାନଙ୍କ ସହ ସମାନ ବ୍ୟବହାର ପାଉଛନ୍ତି ତଥା ସେମାନେ ବିଶେଷ ଭାବରେ ସ୍ୱଚ୍ଛଳ ଓ ଶିକ୍ଷିତ ଅଟନ୍ତି । କେବଳ ଶିକ୍ଷିତ ଶ୍ରମିକମାନେ ହିଁ ଆଧୁନିକ ଯନ୍ତ୍ରପାତି ଓ ଉନ୍ନତ ପ୍ରଣାଳୀ ବ୍ୟବହାର କରିପାରନ୍ତି, ଯାହା ଫଳରେ କି ଉତ୍ପାଦନ ବିଶେଷ ବୃଦ୍ଧିପାଏ ।

ଏପରି କି ଏସବୁ ଦେଶର ପୁଞ୍ଜିପତିମାନେ ବୁଝି ସାରିଲେଣି ଯେ ଶ୍ରମିକମାନଙ୍କୁ ଯଦି ସୁଖୀ ଓ ସନ୍ତୁଷ୍ଟ ରଖାଯାଏ ଏବଂ ସେମାନଙ୍କ ପ୍ରତି ଭଲ ବ୍ୟବହାର କରାଯାଏ, ତେବେ ସେମାନେ ଅଧିକ ଜିନିସ ଓ ଭଲ ଜିନିସ ତିଆରି କରନ୍ତି । ଏଣୁ ଏ ବିଷୟରେ ପୁରୁଣା କାଳିଆ ଧାରଣା ତ୍ୟାଗ କରିବାର ବେଳ ଆସିଲାଣି ।

ଶ୍ରମିକମାନଙ୍କୁ ପରିବାରର ଲୋକପରି ଭାବିବା ଉଚିତ ଓ ସେମାନଙ୍କର ଯତ୍ନନେବା ଉଚିତ । ଗ୍ରାମର ଅନ୍ୟ ଯେ କୌଣସି ବ୍ୟକ୍ତିପରି ସେମାନେ ବି ସୁଶିକ୍ଷା ପାଇବା ଉଚିତ । ସେମାନଙ୍କୁ ସୁଖୀ ଓ ସନ୍ତୁଷ୍ଟ କରିବା ଉଚିତ । ତାହା ହେଲେ ଗ୍ରାମର ସବୁ

ଲୋକ ବୈଜ୍ଞାନିକ ପ୍ରଣାଳୀର ସାହାଯ୍ୟ ନେଇ ବର୍ତ୍ତମାନ ଠାରୁ ବହୁତ ବେଶୀ ଉତ୍ପାଦନ କରି ପାରିବେ । ପୁରୁଣା-କାଳିଆ ଧାରଣାକୁ ଜାବୁଡ଼ି ଧରିବା ଦ୍ୱାରା ଜମିମାଲିକମାନେ ଅନେକ ଭଲ ବିଷୟରୁ ନିଜକୁ ବଞ୍ଚିତ କରିବେ ଏବଂ ସାଧାରଣ ଉନ୍ନତିରେ ବିଘ୍ନ ସୃଷ୍ଟି କରିବେ ।

ସାହୁକାର ଓ ବେପାରୀମାନେ ବି ଗ୍ରାମଦାନକୁ ଅନେକ ସମୟରେ ଭୟ କରନ୍ତି । ସେମାନଙ୍କର ଟଙ୍କା କାଳେ ବୁଡ଼ିଯିବ ଏଥିପାଇଁ ସାହୁକାରମାନଙ୍କର ଭୟ । ସେମାନେ ଭୟ କରନ୍ତି ଯେ ଯଦି ବ୍ୟକ୍ତିଗତ ମାଲିକାନା ଉଠିଯିବ ଏବଂ ଜମି ହସ୍ତାନ୍ତର ହୋଇ ପାରିବ ନାହିଁ, ତେବେ ସେମାନେ ଟଙ୍କା ଆଦାୟ ପାଇବେ କିପରି ? କିନ୍ତୁ ପ୍ରକୃତରେ ଗ୍ରାମଦାନ ସେମାନଙ୍କୁ ଅଧିକତର ନିରାପତ୍ତା ଦେବ । ସକଳ ପ୍ରକାର ଋଣ ଗ୍ରାମସଭା ଜରିଆରେ ଦିଆଯିବ ଓ ପରିଶୋଧ କରାଯିବ । ଏହାଦ୍ୱାରା ଋଣ ଟଙ୍କାକୁ ଖାତକ ଠାରୁ ଆଦାୟ କରିବାର ଦାୟିତ୍ୱ ଗ୍ରାମସଭା ଉପରେ ଆସି ଯାଉଛି । ଖାତକମାନଙ୍କ ସହିତ ବ୍ୟକ୍ତିଗତ ଭାବରେ କାରବାର କରିବାଠାରୁ ଏହି ବ୍ୟବସ୍ଥା ମହାଜନଙ୍କ ପକ୍ଷରେ ଅଧିକତର ଉତ୍କୃଷ୍ଟ ଅଟେ ।

ମାତ୍ର ବିନୋବାଜୀ ଜୋର ଦେଇଛନ୍ତି ଯେ ମହାଜନୀ କାରବାର ଗୋଟିଏ ଜୀବିକା ହେବା ଉଚିତ ନୁହେଁ । ମହାଜନ-ମାନେ କୃଷି, ବେପାର ବା ଅନ୍ୟ ଉପାୟରେ ଜୀବିକା ଅର୍ଜନ କରିବା ଉଚିତ । ଯାହାର ଏପରି ଜୀବିକା ନାହିଁ ସେ ଗୋଟିଏ ଧରନ୍ତୁ । ଟଙ୍କା କରଜ ବିନା ସୁଧରେ ଦିଆଯିବା ଉଚିତ । କେବଳ ମାତ୍ର ହିସାବ ରଖିବାର ଖର୍ଚ୍ଚ ନିଆଯାଇ ପାରେ ।

ଗ୍ରାମଦାନ ହୋଇଗଲେ ବ୍ୟବସାୟୀ ତା'ର ଲାଭ ହରାଇ ବସିବ ବୋଲି ଭୟ କରେ । ମାତ୍ର ଗ୍ରାମଦାନ ଫଳରେ ଯେତେବେଳେ ଉତ୍ପାଦନ ବଢ଼ିବ ସେତେବେଳେ କିଣାବିକା ମଧ୍ୟ ବଢ଼ିବ । ତେଣୁ ସେ ଅତି ଅଧିକ ଲାଭ ନ ନେଇ ମଧ୍ୟ ଭଲ ଆୟ କରି ପାରିବ । ମହାଜନ ଓ ବ୍ୟବସାୟୀମାନେ ଗ୍ରାମଦାନରେ ଯୋଗ ଦେବା ଉଚିତ ଏବଂ ସେମାନଙ୍କର ବୁଦ୍ଧି ଗ୍ରାମସଭା, ଗ୍ରାମପାଣ୍ଠି, ସମବାୟ ଗ୍ରାମ-ଭଣ୍ଡାର ଆଦି ଅନୁଷ୍ଠାନଗୁଡ଼ିକର ଉନ୍ନତିରେ ଖଟାଇବା ଦରକାର '

କେତେକ ଲୋକ ଗାଁରେ ରହନ୍ତି ନାହିଁ ମାତ୍ର ଗାଁରେ ସେମାନଙ୍କର ଜମିଥାଏ । ସେମାନେ ମଧ୍ୟ ଗ୍ରାମଦାନରେ ଯୋଗଦେବା ଉଚିତ । ଗ୍ରାମଦାନ ଆଇନ ଏଥିପାଇଁ ଅନୁମତି ଦେଇଛି । ଅନେକ ସମୟରେ ବିବାହ, ଶ୍ରାଦ୍ଧ ଇତ୍ୟାଦିର ଖର୍ଚ୍ଚ ନେଇ ପ୍ରଶ୍ନ ଉଠିଥାଏ । ଯଦି ଜମି ବିକ୍ରି କରିବା ବା ବନ୍ଧକ ଦେବା ବ୍ୟକ୍ତିପକ୍ଷେ ନିଷିଦ୍ଧ ହୋଇଯାଏ, ତାହାହେଲେ ବିବାହ, ଶ୍ରାଦ୍ଧ ଆଦି କ୍ରିୟାରେ ସାଧାରଣତଃ ଭାରି ଖର୍ଚ୍ଚ ସେ କିପରି ତୁଲାଇବ ?

ମାତ୍ର ଆମମାନଙ୍କର ବୁଝିବା ଉଚିତ ଯେ ଜମି ବିକ୍ରି କରିବା, ବନ୍ଧକ ଦେଇ ବିବାହ, ବ୍ରତ, ଶ୍ରାଦ୍ଧ ପ୍ରଭୃତି କରିବାଟା ଆତ୍ମଘାତୀ କାର୍ଯ୍ୟ ଛଡ଼ା ଆଉ କିଛି ନୁହେଁ । ବିନୋବାଜୀ ଥରେ ଏ ବିଷୟରେ ଗୋଟିଏ ସୁନ୍ଦର ଉଦାହରଣ ଦେଇଥିଲେ । ଦିନେ ଜଣେ ଲୋକ ପର୍ବତ ଉପରେ ଥିବାବେଳେ ଅନ୍ଧାର ହୋଇଗଲା । ଭାରି ଥଣ୍ଡା ବି ହେଲା । ସେତେବେଳେ ତା' ପାଖରେ ଗୋଟିଏ ମାତ୍ର କମ୍ବଳ ଥିଲା । ମାତ୍ର ଗୋଟିଏ କମ୍ବଳ ଥିବାରୁ ଶୀତ ସମ୍ଭାଳି

ପାରିଲା ନାହିଁ । ହଠାତ୍ ତା' ମନରେ ଏକ ଚମତ୍କାର କଳ୍ପନା ଖେଳିଗଲା । ସେ କମ୍ବଳରେ ନିଆଁ ଲଗାଇ ଦେଲା । ଏଥିରେ ତାକୁ ଗରମ ଓ ବଡ଼ ଆରାମ ମିଳିଲା । ମାତ୍ର ଅଳ୍ପ କେତେକ ମିନିଟ ପାଇଁ । ଏହାପରେ ଅଧିକ ଥଣ୍ଡା ଓ ଘୁଙ୍ଗା ହେତୁ ମରିଗଲା ।

ବାହା ବ୍ରତ ଆଦି ତୁଲେଇବା ପାଇଁ ଜମି ବିକି କରିବା ସେହିପରି କଥା । ଏହାଦ୍ୱାରା ସେ ତା'ର ଉତ୍ତରାଧିକାରୀମାନଙ୍କୁ ଜୀବିକାର୍ଜନ ପନ୍ଥାରୁ ବଞ୍ଚିତ କରେ । ଏଣୁ ଏସବୁ ଖର୍ଚ୍ଚ ତୁଲାଇବାକୁ ଅନ୍ୟ କିଛି ଉପାୟ ଖୋଜିବାକୁ ହେବ ।

ଆହୁରି ମଧ୍ୟ ବିବାହ, ଶ୍ରାଦ୍ଧ ଆଦି ଖର୍ଚ୍ଚ କଠୋର ଭାବରେ କମାଇଦେବା ଉଚିତ । ଆମଦେଶ ପରି ଗରିବ ଦେଶ ପକ୍ଷରେ ଏ ପ୍ରକାର ଖର୍ଚ୍ଚ ଏକ ଅନୁଚିତ ବୋଝ । କେତେଗୁଡ଼ିଏ ଗ୍ରାମଦାନୀ ଗାଁ ଏକାଠି ବସି ଏସବୁ ଖର୍ଚ୍ଚକୁ କମାଇ ଦେବାର ବ୍ୟବସ୍ଥା କରିବା ଦରକାର । କେତୋଟି ବିବାହ ଏକାଠି କରିବା ଦ୍ୱାରା କମ୍ ଖର୍ଚ୍ଚରେ ବେଶୀ ମଜା ମିଳିପାରିବ ।

କେତେକ ଲୋକ ଆଶଙ୍କା କରନ୍ତି ଯେ ଗ୍ରାମଦାନୀ ଗାଁରେ ସବୁ ଜମି କୋଠରେ ଚାଷ କରାଯିବ ଏବଂ କାରଖାନା ଶ୍ରମିକ ପରି ଗ୍ରାମବାସୀମାନେ ମଜୁରିଆ ପାଲଟି ଯିବେ । ଏହା ଏକାବେଳକେ ଭିତ୍ତିଶୂନ୍ୟ ଭୟ । ଗ୍ରାମଦାନ ପରେ ଚାଷ କରିବାକୁ ଜମି ଜଣ ଜଣ କରି ଲୋକଙ୍କୁ ଦିଆଯାଏ । ଜବରଦସ୍ତି କୋଠଚାଷ କରାଯାଏ ନାହିଁ । ସର୍ବସମ୍ମତି ବା ସର୍ବାନୁମତିର ଭିତ୍ତିଉପରେ ଗ୍ରାମ ସଭାର ନିଷ୍ପତ୍ତି ମଧ୍ୟରେ ସବୁଠାରୁ ବେଶୀ ବ୍ୟକ୍ତିଗତ ସ୍ୱାଧୀନତା ରହିଥାଏ ।

ଜଣ ଜଣ କରି ଚାଷକରିବାଠାରୁ ଏକାଠି ମିଳିମିଶି ଚାଷ ଯଦି ଅଧିକ ଲାଭଜନକ ବୋଲି ପ୍ରମାଣିତ ହୁଏ ତେବେ ଚାଷୀମାନେ ସେପରି କରିପାରନ୍ତି ।

ଆର୍ଥିକ ସମାନତା ଏକ ପ୍ରଧାନ ପ୍ରଶ୍ନ । ଯଦି ୨୦ ଭାଗରୁ ଭାଗେ ମାତ୍ର ଜମି ପୁନର୍ବଣ୍ଟନ ହୁଏ, ତେବେ ଏହି ଆର୍ଥିକ ସମାନତା ଆସିବ କିପରି ? ଏହି ପୁନର୍ବଣ୍ଟନ ପରେ ସୁଦ୍ଧା ପୂର୍ବପରି ଜଳ ଜଳ ଦିଶୁଥିବା ବିଷମତା ରହିଯିବ । ଆର୍ଥିକ ସମାନତା ଏକା କଲମ ଗାରକେ ଆସି ପାରିବ ନାହିଁ । ଏଥିପାଇଁ ସମୟ ଲାଗିବ । ବିନୋବାଜୀ ଏହାକୁ ପାହାଡ଼ ଚଢ଼ିବା ସଙ୍ଗେ ତୁଳନା କରିଛନ୍ତି । ଏପରି କେତେକ ସାହାସୀ ଚଢ଼ାଳି ଅଛନ୍ତି ଯେଉଁମାନେ ପାହାଡ଼ର ଅତଟ କାନ୍ଥିରେ ଓ ପଥର ମୁଣ୍ଡିଆରେ ସିଧା ଚଢ଼ିଯାଇ ପାରନ୍ତି । କିନ୍ତୁ ଏପରି ଚଢ଼ାଳିଙ୍କ ସଂଖ୍ୟା ଅତି କମ୍ ଅଟେ । ପକ୍ଷାନ୍ତରେ ଇଞ୍ଜିନିୟରମାନେ କ୍ରମେ କ୍ରମେ ଉଠାଣି ରାସ୍ତା ପର୍ବତ ଉପରକୁ ତିଆରି କରନ୍ତି ଏବଂ ଅଧିକ କଷ୍ଟ ବିନା ବୁଢ଼ା ବୁଢ଼ୀ ଓ ସାନପିଲା ମଧ୍ୟ ଏହିପରି ରାସ୍ତା ଦେଇ ପର୍ବତ ଉପରକୁ ଚଢ଼ି ପାରନ୍ତି । ଏ ଉପାୟରେ ଟିକିଏ ଅଧିକ ସମୟ ଲାଗେ । କିନ୍ତୁ ସମସ୍ତଙ୍କ ପକ୍ଷରେ ଏହା ସହଜସାଧ୍ୟ ହୁଏ । ଗ୍ରାମଦାନ ପାହାଡ଼ ଉପରକୁ ଚଢ଼ିଥିବା ରାସ୍ତା ପରି । ପ୍ରତ୍ୟେକ ଲୋକ ସହଜରେ ଏ ବାଟ ଧରିପାରିବେ ଏବଂ ଏହି ବାଟରେ ଗଲେ ଶେଷରେ ଲକ୍ଷ୍ୟ ସ୍ଥଳରେ ନିଶ୍ଚୟ ପହଞ୍ଚିବେ ।

ପ୍ରଥମେ ଜମିର ଏକ ଗୋଟିଆ ଭାଗ ବଣ୍ଟାଯିବ । ବାଣ୍ଟି ଖୁଣ୍ଟି ଚଳିବାର ଶିକ୍ଷା ଏହାଦ୍ୱାରା ଆରମ୍ଭ ହୁଏ । ଏହା ସଙ୍ଗେ ସଙ୍ଗେ

ଅଧିକ ଉତ୍ପାଦନପାଇଁ ଉଦ୍ୟମ କରାଯିବ । ପୂର୍ବରୁ ଭୂମିହୀନ ଲୋକଙ୍କୁ ଟିକିଏ ଜମିଦେବା ଉପରନ୍ତୁ ଅନ୍ୟାନ୍ୟ ଧନ୍ଦା ଦିଆଯିବ । ଏହା ସେମାନଙ୍କ ଆର୍ଥିକ ଆୟ ସ୍ପଷ୍ଟରୂପେ ବଢ଼ାଇବ । ଅନ୍ୟ କୃଷୀମାନେ ବି ସେମାନଙ୍କ ଜମିରୁ ଅଧିକ ଫସଲ ଉତ୍ପାଦନ କରିବେ । ଫଳରେ ଅଳ୍ପ କେତେ ବର୍ଷ ମଧ୍ୟରେ ସେମାନେ ଚାଷ କରୁଥିବା ଜମିରୁ ଆଉ କିଛି କିଛି ଛାଡ଼ି ଦେବାକୁ ପ୍ରସ୍ତୁତ ଓ ଇଚ୍ଛୁକ ହେବେ । ଏହି ବ୍ୟବସ୍ଥା ସର୍ବଦା ଚାଲୁ ରହିବ ।

ବିନୋବାଜୀ ଆମକୁ ଚେତେଇ ଦେଇଛନ୍ତି ଯେ ଭବିଷ୍ୟତ ବଂଶଧରମାନେ ଆର୍ଥିକ ସମାନତା ଓ ନ୍ୟାୟ ବିଷୟରେ ସେମାନଙ୍କ ପୂର୍ବପୁରୁଷଠାରୁ ବେଶୀ ଜାଗ୍ରତ ହେବେ—କିନ୍ତୁ କମ୍ ନୁହେଁ । ସେମାନେ ଆମ କାମକୁ ଅଧିକତର ଉତ୍ସାହରେ ଆଗେଇ ନେବେ । କାଳର ଗତି କେବେ ପଛକୁ ଫେରିବ ନାହିଁ । ମାତ୍ର ଆଗକୁ ମାଡ଼ିଚାଲିବ । ଆର୍ଥିକ ସମାନତାର ଲକ୍ଷ୍ୟ ଡେରିରେ ନୁହେଁ ମାତ୍ର ଚଞ୍ଚଳ ସାଧିତ ହେବ । ଯେହେତୁ ଐତିହାସିକ ପରିବର୍ତ୍ତନର ଗତି ଦିନକୁ ଦିନ ଦ୍ରୁତତର ହେଉଛି ।

# ଷଷ୍ଠ ଅଧ୍ୟାୟ

## ଗ୍ରାମଦାନର ଅଗ୍ରଗତି

ମଙ୍ଗରୋଠଠାରେ ଗ୍ରାମଦାନ ଆରମ୍ଭ ହୋଇ ଦ୍ରୁତଗତିରେ ଭାରତର ବିଭିନ୍ନ ପ୍ରଦେଶକୁ ବିସ୍ତାରଲାଭକଲା । ୧୯୫୫ ଶେଷକୁ ଓଡ଼ିଶାରେ ପ୍ରାୟ ଏକସହସ୍ର ଗ୍ରାମଦାନ ହୋଇଥିଲା । ୧୯୫୮ ବେଳକୁ ଆନ୍ଧ୍ର ପ୍ରଦେଶ, ମାନ୍ଦ୍ରାଜ, କେରଳ ଓ ମହାରାଷ୍ଟ୍ରରେ ଶହ ଶହ ଗ୍ରାମଦାନ ହୋଇଗଲା । କେବଳ କାଶ୍ମୀର ଓ ନାଗାଲ୍ୟାଣ୍ଡ ବ୍ୟତୀତ ସବୁ ରାଜ୍ୟରେ ସେତେବେଳକୁ କିଛି କିଛି ଗ୍ରାମଦାନ ହୋଇଥିଲା ।

୧୯୫୭ ମସିହାରେ ମହୀଶୂରର ଏଲୱାଲ ନାମକ ଗ୍ରାମରେ ଏକ ଅଦ୍ୱିତୀୟ ସମ୍ମିଳନୀ ବସିଥିଲା । ଏଥିରେ ଭାରତର ତତ୍‌କାଳୀନ ରାଷ୍ଟ୍ରପତି ଡକ୍ଟର ରାଜେନ୍ଦ୍ର ପ୍ରସାଦ, ପ୍ରଧାନମନ୍ତ୍ରୀ ଜବାହାରଲାଲ ନେହରୁ, ବିନୋବାଜୀ ଏବଂ କଂଗ୍ରେସ ପି: ଏସ୍: ପି: ଓ କମ୍ୟୁନିଷ୍ଟ ଏହି ତିନିଟି ପ୍ରଧାନ ରାଜନୈତିକ ଦଳର ନେତାମାନେ ଯୋଗ ଦେଇଥିଲେ । ଦୁଇଦିନବ୍ୟାପୀ ଗଭୀର ଆଲୋଚନା ପରେ ଗ୍ରାମଦାନ ଆନ୍ଦୋଳନ ପ୍ରତି ଏହିସବୁ ରାଜନୈତିକ ଦଳର ସର୍ବସମ୍ମତ ସମର୍ଥନ ଜଣାଇ ଏକ ବିବୃତି ସମ୍ମିଳନୀ ପକ୍ଷରୁ ପ୍ରକାଶ କରାଯାଇଥିଲା । ବିବୃତିରେ କୁହାଯାଇଥିଲା ଯେ ଗ୍ରାମଦାନ ହିଁ ଭୂମି-ସମସ୍ୟାର ସବୁଠୁଁ ଉତ୍କୃଷ୍ଟ ସମାଧାନ ପନ୍ଥା ଏବଂ ଏହା ଦେଶର ନୈତିକ ଓ ବୈଷୟିକ ଉନ୍ନତିରେ ବିଶେଷ ସହାୟକ ହେବ । ଗ୍ରାମଦାନ ଓ ଗ୍ରାମଗୋଷ୍ଠି ଯୋଜନା ମଧ୍ୟରେ ନିବିଡ଼ ସହଯୋଗ ରକ୍ଷାପାଇଁ ବି ପ୍ରସ୍ତାବ ହୋଇଥିଲା ।

୧୯୬୧ରେ ବିନୋବାଜୀ ଆସାମକୁ ଗଲେ । ସେଠାରେ ତାଙ୍କର ଅଠର ମାସର ରହଣୀକାଳ ମଧ୍ୟରେ ୯ଶହରୁ କିଛି ଅଧିକ ଗ୍ରାମଦାନ ହେଲା । ସେ ଆସାମରୁ ଫେରିଆସିବା ପରେ ପରେ ଚୀନ ଭାରତୀୟ ସୀମାନ୍ତ ଆକ୍ରମଣ କଲା । ଚୀନ-ଭାରତ ସଂଘର୍ଷର ଏହି ପରିପ୍ରେକ୍ଷୀରେ ଗ୍ରାମଦାନ ଯେ ଦେଶ ରକ୍ଷାର ଏକ ଉପାୟ ଏହିକଥା ଉପରେ ବିନୋବାଜୀ ବିଶେଷ ଜୋର ଦେଲେ ଏବଂ ଗ୍ରାମଦାନ ଯେପରି ସବୁ ଲୋକଙ୍କ ପକ୍ଷେ ଗ୍ରହଣୀୟ ହେବ, ସେଥିପାଇଁ ସେ ଗ୍ରାମଦାନର ବିଧି ବିଧାନରେ କେତେକ ପରିବର୍ତ୍ତନ କଲେ ।

ଏହାପରେ ପଶ୍ଚିମ ବଙ୍ଗଳା ଓ ଅନ୍ୟାନ୍ୟ ରାଜ୍ୟରେ ଗ୍ରାମଦାନ ମିଳିଲା । ମଙ୍ଗରୋଠ ଗୋଟିଏ ସାଧାରଣ ସ୍ୱାଭାବିକ ଗ୍ରାମ ଥିଲା । ମାତ୍ର ମହାରାଷ୍ଟ୍ର ଓ ଓଡ଼ିଶାରେ ମିଳିଥିବା ଅଧିକାଂଶ ଗ୍ରାମଦାନ ଆଦିବାସୀ ଅଞ୍ଚଳରେ ଥିଲା । ମାନ୍ଦ୍ରାଜ ଓ ଆସାମର ଗ୍ରାମଦାନୀ ଗ୍ରାମଗୁଡ଼ିକରେ ମୋଟ ଉପରେ ଅଣ-ଆଦିବାସୀ ଥିଲେ । ମାତ୍ର ବିନୋବାଜୀଙ୍କ ସୁଲଭ ଗ୍ରାମଦାନ ପ୍ରସ୍ତାବ ଦିନରୁ ସବୁ ସମୃଦ୍ଧିଶାଳୀ ଓ ବଡ଼ ବଡ଼ ଗ୍ରାମ ଗ୍ରାମଦାନରେ ମିଳିଲା । ଏ ଗ୍ରାମଗୁଡ଼ିକରେ ଶିକ୍ଷା ପରିଷ୍କାର ଭାବରେ ଉଚ୍ଚ ସ୍ତରର ଥିଲା । ଏହାଦ୍ୱାରା ପ୍ରମାଣିତ ହେଲା ଯେ ଭାରତର ଯେ କୌଣସି ଅଞ୍ଚଳରେ ଗ୍ରାମଦାନ ସମ୍ଭବ ହୋଇ ପାରିବ ।

ଡିସେମ୍ବର ୧୯୬୩ରେ ରାଯ୍ପୁରଠାରେ ଅନୁଷ୍ଠିତ ଅଖିଳ ଭାରତ ସର୍ବୋଦୟ ସମ୍ମିଳନୀ ଗ୍ରାମଦାନ, ଖଦି ଓ ଶାନ୍ତିସେନା ଏହି ତ୍ରିବିଧ କାର୍ଯ୍ୟକ୍ରମକୁ ଗ୍ରହଣ କରିନେଇ ଘୋଷଣା କଲେ ଯେ ଏହି କାର୍ଯ୍ୟକ୍ରମ ଜରିଆରେ ୧୯୬୯ ସୁଦ୍ଧା ଭାରତର ସମସ୍ତ

ଗ୍ରାମରେ ଗ୍ରାମସ୍ୱରାଜର ମୂଳଦୂଆ ପକାଇବା ଶ୍ୱାଁ ୧୯୬୯ରେ ଗାନ୍ଧୀ ଶତବାର୍ଷିକୀରେ ଗାନ୍ଧୀଜୀଙ୍କ ସ୍ମୃତି ପ୍ରତି ଶ୍ରଦ୍ଧାଞ୍ଜଳୀର ସବୁଠୁଁ ଉତ୍କୃଷ୍ଟ ଚିହ୍ନା ହେବ ।

୧୯୬୫ ଜୁନ ମାସରେ ବିନୋବାଜୀ ବିହାରରେ ଗ୍ରାମଦାନର ଏକ 'ତୋଫାନ ଆନ୍ଦୋଳନ ଆରମ୍ଭ କରିବାର ସୂଚନା ଦେଲେ । ଯଦି ବିହାରର ସହକର୍ମୀମାନେ ୯ ଏ ରାଜ୍ୟରେ ଛଅମାସ ମଧ୍ୟରେ ୧୦,୦୦୦ ଗ୍ରାମଦାନ କରାଇ ନେବାକୁ ସଂକଳ୍ପର କରନ୍ତି ତେବେ ସେ ନିଜେ ବିହାରକୁ ଯାଇ ସାହାଯ୍ୟ କରିବାକୁ ଇଚ୍ଛା ପ୍ରକାଶ କଲେ । ବିନୋବାଜୀଙ୍କର ଏହି ସୂଚନା ସହକର୍ମୀମାନେ ଗ୍ରହଣ କରିନେଲେ ଏବଂ ୧୯୬୫ ସେପ୍ଟେମ୍ବର ୧୧ତାରିଖ ଦିନ ବିନୋବାଜୀ ବିହାରରେ ପହଞ୍ଚିଲେ । ପରେ ଅବଶ୍ୟ ସମୟର ସୀମାକୁ ବଢ଼ାଇ ଦେବାକୁ ହେଲା ଏବଂ ୧୯୬୬ ଜୁଲାଇ ଶେଷ ସୁଦ୍ଧା ବିହାରରେ ୯୬୦୦ଗ୍ରାମଦାନ ହୋଇପାରିଲା । ଏହି ତୋଫାନ ଆନ୍ଦୋଳନ ସମଗ୍ର ଭାରତକୁ ଖୋଲଗଲା ଏବଂ ତୋଫାନ ଆନ୍ଦୋଳନ ପୂର୍ବରୁ ଗ୍ରାମଦାନ ସଂଖ୍ୟା ୬୦୦୦ମାତ୍ର ଥିବାସ୍ଥଳେ ୧୯୬୬ ଜୁଲାଇ ବେଳକୁ ୨୩,୦୦୦ରୁ ଅଧିକ ହୋଇଗଲା ।

୧୯୬୬ ଏପ୍ରିଲରେ ବାଲଆରେ ଅନୁଷ୍ଠିତ ଅଖିଳ ଭାରତ ସର୍ବୋଦୟ ସମ୍ମିଳନୀରେ ଏକ ପ୍ରସ୍ତାବ ଗୃହୀତ ହେଲା କି ୧୯୬୭ ଶେଷ ସୁଦ୍ଧା ସାରା ଭାରତରେ ଗ୍ରାମଦାନ ହେଉ । ଜୟପ୍ରକାଶଜୀ ଆଶାପ୍ରକାଶ କଲେ ଯେ ୧୯୬୯ରେ ଗାନ୍ଧୀଜୀଙ୍କ ଶତବାର୍ଷିକୀ ବେଳକୁ ଭାରତର ସାଢ଼େ ପାଞ୍ଚଲକ୍ଷଯାକ ଗ୍ରାମ ଗ୍ରାମଦାନ ହୋଇଯିବ ।

ଗ୍ରାମଦାନ ହେଲା ପରେ ଗାଁର ଅବସ୍ଥାର କଣ ପରିବର୍ତ୍ତନ ହୋଇଛି ବୋଲି ଗୋଟିଏ ପ୍ରଶ୍ନ ବାରମ୍ବାର ପଚରା ଯାଉଛି ।

ଭୂମି ଉପରୁ ଯେ ବ୍ୟକ୍ତିଗତ ମାଲିକାନାର ଲୋପ ହୋଇଛି ଏବଂ ଭୂମିହୀନ ଲୋକେ ଯେ ଭୂମିରୁ କିଛି ଭାଗ ପାଇଛନ୍ତି ଏହାହିଁ ଗ୍ରାମଦାନରେ ସବୁଠୁଁ ଗୁରୁତ୍ୱପୂର୍ଣ୍ଣ ଘଟଣା ।

ଜୟପ୍ରକାଶଜୀ ଦର୍ଶାଇଛନ୍ତି ଯେ ଜମିଉପରେ ବ୍ୟକ୍ତିଗତ ମାଲିକାନାର ଲୋପକୁ ବିଦେଶୀ ଶାସନରୁ ମୁକ୍ତି ସହିତ ତୁଳନା କରା ଯାଇପାରେ ଏବଂ ଏହା ଏକ ବିପ୍ଳବାତ୍ମକ ପଦକ୍ଷେପ ଅଟେ । ଗ୍ରାମଦାନ ଦ୍ୱାରା ଯଦି ଆଉ କିଛି ନ ହୋଇ କେବଳ ଏତିକିଟି ମାତ୍ର ହାସଲ ହୁଏ ତାହା ହେଲେ ବି ଗ୍ରାମଦାନ ସାର୍ଥକ ହେଲା ବୋଲି କୁହାଯିବ ।

ବାରମ୍ବାର ଉଠୁଥିବା ଅନ୍ୟ ପ୍ରଶ୍ନର ଉତ୍ତର ବି ଜୟପ୍ରକାଶଜୀଙ୍କର ଏ ଉକ୍ତିରୁ ମିଳୁଛି । ପ୍ରଶ୍ନ ହୁଏ ଯେ, ହଜାର ହଜାର ଗ୍ରାମଦାନ କରାଇବା ପରିବର୍ତ୍ତେ ଅଳ୍ପ କେତୋଟି ଗ୍ରାମକୁ ନେଇ ଆଦର୍ଶ ଗ୍ରାମରୂପେ ଗଢ଼ାଯାଉନାହିଁ କାହିଁକି ? ଗ୍ରାମଦାନ ଆନ୍ଦୋଳନର ଅସଲ ଲକ୍ଷ୍ୟ ହେଲା, ସମ୍ପତ୍ତି ଉପରେ ବ୍ୟକ୍ତିଗତ ମାଲିକାନା ପ୍ରତି ସମାଜର ମତିଗତି ବଦଳାଇବା । ଏହି ପରିବର୍ତ୍ତନ ସାରା ସମାଜରେ ବିପୁଳ ପରିମାଣରେ ଘଟାଇବାକୁ ପଡ଼ିବ । ଅଳ୍ପ କେତୋଟି ଗ୍ରାମରେ ନମୂନା ଗଢ଼ି ଦେଖାଇଲେ କାମ ଚଳିବ ନାହିଁ ।

ଏହା କିଛି କମ୍ କୃତିତ୍ୱ ନୁହେଁ ଯେ ଗ୍ରାମଦାନୀ ଗ୍ରାମ-ମାନଙ୍କରେ ହଜାର ହଜାର ଭୂମିହୀନ ପରିବାରଙ୍କୁ ସଦିଚ୍ଛା ଓ

ବାନ୍ଧୁତା ସହିତ ଜମିଦିଆ ଯାଇଛି । ଏହି ଘଟଣା ସେଠାର ଆବହାଓ୍ୱାକୁ ବଦଳାଇ ଦେଇଛି । ସେଠାରେ ନୂତନ ଏକ ସଂହତି ଓ ସାମାଜିକ ଦୃଷ୍ଟିଭଙ୍ଗୀ ଜନ୍ମଲାଭ କରିଛି ।

ଗ୍ରାମଦାନର ସଦ୍ୟ ଫଳ ମାଲିମକଦ୍ଦମା ଉପରେ ପଡ଼ିଛି । ମକଦ୍ଦମା ଏହି ଗ୍ରାମମାନଙ୍କରୁ ମୂଳତଃ ଲୋପ ପାଇଛି । ବ୍ଳକଦାନ ଅଞ୍ଚଳରେ ପୋଲିସ ଥାନା ମାନଙ୍କରେ ଏତଲା ଅଭିଯୋଗ ହଠାତ୍ କମି ଯାଇଛି । ଗ୍ରାମଦାନୀ ଗ୍ରାମର ଲୋକଙ୍କୁ ବିଶେଷରେ ଓଡ଼ିଶା ଓ ଗୁଜୁରାଟରେ ଭ୍ରଷ୍ଟାଚାର ବିରୋଧରେ ସଫଳତାର ସହ ସଂଗ୍ରାମ କରିବାକୁ ଏହା ଏକତା-ଶକ୍ତି ଯୋଗାଇଛି । ସରକାରୀ ତଳିଆ କର୍ମଚାରୀଙ୍କର ଲୋକଙ୍କଠାରୁ ବେଆଇନ ପାଉଣା ଆଦାୟକୁ ଲୋକେ ସଫଳତାର ସହିତ ପ୍ରତିରୋଧ କରିଛନ୍ତି । କେତେକ ସ୍ଥଳରେ ଦୁର୍ନୀତିଗ୍ରସ୍ତ କର୍ମଚାରୀମାନେ ବେଆଇନ ଭାବରେ ଆଦାୟ କରିଥିବା ଅର୍ଥ ଫେରାଇ ଦେବାକୁ ବାଧ ହୋଇଛନ୍ତି ।

ବିଶେଷକରି ଅନୁନ୍ନତ ଅଞ୍ଚଳରେ ଅର୍ଥନୀତି ସାହୁକାର-ମାନଙ୍କ କବଳରେ ରହିଛି । ସେମାନେ ସାଧାରଣତଃ ଶତକଡ଼ା ୫୦ ରୁ ୧୫୦ ପର୍ଯ୍ୟନ୍ତ ସୁଧ ବର୍ଷକୁ ଆଦାୟ କରନ୍ତି । ପ୍ରଥମେ ଏହି ମହାଜନମାନେ ଏହି ଗ୍ରାମଦାନୀ ଲୋକମାନଙ୍କସହ ଅସହଯୋଗ କରି ସେମାନଙ୍କର ମନର ବଳକୁ ଭାଙ୍ଗି ଦେବାକୁ ଚେଷ୍ଟା କରିଥିଲେ ଓ କେତେକ କ୍ଷେତ୍ରରେ ସଫଳ ବି ହୋଇଥିଲେ । ମାତ୍ର ଅଧିକାଂଶ ଗ୍ରାମର ଲୋକେ ଆତ୍ମରକ୍ଷାର ସମର୍ଥ ହୋଇଥିଲେ । ସେମାନେ ଗାଁ ପାଣ୍ଠି ପ୍ରତିଷ୍ଠା କଲେ । ଏହି ପାଣ୍ଠି ସେମାନଙ୍କର ଦରକାର ବେଳେ ଖୁବ୍ କାମରେ ଆସିଲା । ଶେଷରେ ବହୁ ମହାଜନଙ୍କୁ ପରାଜୟ ମାନିବାକୁ ହେଲା । ସେମାନେ ବର୍ତ୍ତମାନ

ସୁଧହାର କମାଇ ଦେଇଛନ୍ତି ଓ ଗ୍ରାମବାସୀମାନଙ୍କ ସହ ସହଯୋଗ କରୁଛନ୍ତି ।

ଗ୍ରାମଦାନର ପରବର୍ତ୍ତୀ ଉନ୍ନୟନ କାର୍ଯ୍ୟମାନ ହାତକୁ ନିଆଗଲାଣି । ଗାନ୍ଧୀଜୀଙ୍କ ପରିକଳ୍ପିତ ଗଠନମୂଳକ କାର୍ଯ୍ୟରେ ନିଯୁକ୍ତ ଥିବା ଅଧିକାଂଶ ସର୍ବଭାରତୀୟ ଅନୁଷ୍ଠାନଗୁଡ଼ିକ ଗ୍ରାମଦାନୀ ଅଞ୍ଚଳମାନଙ୍କରେ ସେମାନଙ୍କର କେନ୍ଦ୍ର ଖୋଲି ଗୁଡ଼ିଏ ଗାଁର ଦାୟିତ୍ୱ ନେଇଛନ୍ତି । ଯଥା— ଗାନ୍ଧୀସ୍ମାରକ ନିଧି, କସ୍ତୁରବା ଗାନ୍ଧୀ ରାଷ୍ଟ୍ରୀୟ ସ୍ମାରକନିଧି, ଖଦି ଏବଂ ଗ୍ରାମୋଦ୍ୟୋଗ କମିଶନ ଓ ଅନ୍ୟ ଅନେକ ଖଦି ପ୍ରତିଷ୍ଠାନ, ହରିଜନ ସେବକ ସଙ୍ଘ ପ୍ରଭୃତି ଏହି ଗ୍ରାମମାନଙ୍କରେ ସେମାନେ ନିଜ ନିଜର ଖାସ୍ କାମ ଆରମ୍ଭ କରି ଦେଇଛନ୍ତି ଏବଂ ଗ୍ରାମର ସାଧାରଣ ଉନ୍ନତି-ମୂଳକ କାର୍ଯ୍ୟରେ ଭାଗ ନେଉଛନ୍ତି । ଦୃଷ୍ଟାନ୍ତ ସ୍ୱରୂପ, ଖଦି ପ୍ରତିଷ୍ଠାନମାନ ଖଦିକାର୍ଯ୍ୟ ଆରମ୍ଭ କରିଛନ୍ତି ଏବଂ କସ୍ତୁରବା ଟ୍ରଷ୍ଟ ଶିଶୁ ଓ ମାତୃମଙ୍ଗଳ କାର୍ଯ୍ୟରେ ବିଶେଷ ଦୃଷ୍ଟି ଦେଇଛି ।

ଗ୍ରାମର ଉନ୍ନତିମୂଳକ କାର୍ଯ୍ୟର ଯତ୍ନ ନେବାକୁ ଗ୍ରାମଦାନୀ ଗ୍ରାମମାନଙ୍କରେ ଲୋକେ ନାନା ଅନୁଷ୍ଠାନ ଗଢ଼ୁଛନ୍ତି । ମାନ୍ଦ୍ରାଜରେ ଗ୍ରାମସ୍ୱରାଜ୍ୟ ସମବାୟ ସଙ୍ଘ, ଓଡ଼ିଶା ଓ ଆସାମର ଗ୍ରାମଦାନ ସଙ୍ଘ ସବୁ ଉଲ୍ଲେଖଯୋଗ୍ୟ । ଏହି ଅନୁଷ୍ଠାନ ସବୁ ବ୍ଲକସ୍ତରରେ ଗ୍ରାମଦାନୀ ଗ୍ରାମମାନଙ୍କରେ ପ୍ରତିନିଧିଙ୍କୁ ନେଇ ଗଠିତ । ଏହି ସଙ୍ଘ-ଗୁଡ଼ିକୁ ସୋସାଇଟି ରେଜିଷ୍ଟ୍ରେସନ ଆକ୍ଟ ଅନୁଯାୟୀ ରେଜେଷ୍ଟ୍ରି କରାଯାଇଛି । ଅନ୍ୟାନ୍ୟ ରାଜ୍ୟରେ ବି ଏହିପରି ସଙ୍ଘ ଗଢ଼ା ଯାଉଛି । ମାନ୍ଦ୍ରାଜରେ ଏହି ସଙ୍ଘଗୁଡ଼ିକ କୃଷି ଉତ୍ପାଦନ ବୃଦ୍ଧି ଓ କଣା ବିକାଟରେ ଲୋକଙ୍କ ପାଇଁ ବହୁତ ଭଲ କାର୍ଯ୍ୟ କରିଛି ।

ଗୁଜୁରାଟରେ ସମବାୟ ସମିତିଗୁଡ଼ିକ ଫଳପ୍ରଦ ହୋଇଛି ସେମାନେ କୃଷିଜାତ ପଦାର୍ଥ କିଣାବିକାର ଭାରନେଇ ଗ୍ରାମବାସୀ-ମାନଙ୍କର ବହୁ ଉପକାର ସାଧନ କରିଛନ୍ତି । ଅଳ୍ପ ପରିମାଣରେ କୋରାପୁଟ ଜିଲାରେ ବି ଏହା ହୋଇଛି ।

ଭାରତ ସରକାରଙ୍କଦ୍ୱାରା ପରିଚାଳିତ ଗ୍ରାମଗୋଷ୍ଠୀ ଯୋଜନା ଓ ଗ୍ରାମଦାନ ଆନ୍ଦୋଳନ ମଧ୍ୟରେ ଘନିଷ୍ଠ ସହଯୋଗ ପାଇଁ ୧୯୫୭ର ୟେଲବାଲ ସମ୍ମିଳନୀ ସମସ୍ତଙ୍କୁ ନିବେଦନ କରିଥିଲା । ଅତି ଅଳ୍ପ ଦିନ ହେଲା ସର୍ବସେବା ସଙ୍ଘ ଓ କେନ୍ଦ୍ର ସରକାରଙ୍କ ଗ୍ରାମଗୋଷ୍ଠୀ ବିଭାଗର ସହଯୋଗରେ ୨୫ଟି ସଘନ ଅଞ୍ଚଳର ପ୍ରୋଜେକ୍ଟ ହାତକୁ ନିଆଯାଇଛି । ଏହିପରି ପ୍ରତ୍ୟେକ ଅଞ୍ଚଳରେ ଲଗାଲଗି ହୋଇ ରହିଥିବା ପ୍ରାୟ ୫ ହଜାର ଲୋକ ଏବଂ ୧ ରୁ ୫ ହଜାର ଏକର ଜମି ଅଛି । କୃଷି, କୁକୁଡ଼ା ବୃକ୍ଷ ଓ ପଶୁପାଳନରେ ଉତ୍ପାଦନ ବୃଦ୍ଧି କରିବା ଏହି ଯୋଜନାର ଲକ୍ଷ୍ୟ ଅଟେ । ଖଦୀ ଓ ଗ୍ରାମୋଦ୍ୟୋଗ କମିଶନ ସାଧାରଣ ନୀତି ଦୃଷ୍ଟିରୁ ଗ୍ରାମଦାନ ଅଞ୍ଚଳକୁ ହିଁ ଖଦୀର ଭବିଷ୍ୟତ ପ୍ରସାର ପାଇଁ ବାଛି-ନେବାକୁ ମନସ୍ଥ କରିଛି ।

ଅନୁନ୍ନତ ଦେଶମାନଙ୍କରେ ଗ୍ରାମାଞ୍ଚଳର ଉନ୍ନୟନ କାର୍ଯ୍ୟରେ ସାହାଯ୍ୟ କରିବାକୁ "ଅଭାବ ବିରୋଧରେ ଯୁଦ୍ଧ" (W n want) ନାମକ ଗୋଟିଏ ସ୍ୱେଚ୍ଛାସେବକ ଆନ୍ଦୋଳନ ବିଲାତରେ ଗଢ଼ାଯାଇଛି । ଏହି ସଂସ୍ଥା ଗ୍ରାମଦାନ ଆନ୍ଦୋ-ଳନରେ ଆଗ୍ରହ ପ୍ରକାଶ କରି ୪୦୦ ଗ୍ରାମପାଇଁ ଏପର୍ଯ୍ୟନ୍ତ ୨୫ ଲକ୍ଷ ଟଙ୍କା ଦାନକରି ସାରିଲେଣି । ପ୍ରତ୍ୟେକ ଗ୍ରାମର ଉନ୍ନୟନ ପାଇଁ ସେ ହାରାହାରି ୫୬୦୦୦ଟଙ୍କା ଦାନ କରିଛନ୍ତି । ଉନ୍ନତ କୃଷି

ପ୍ରଣାଳୀରେ ଗ୍ରାମଦାନୀ ଗ୍ରାମର ଲୋକଙ୍କୁ ତାଲିମ ଦେବା'ର କାର୍ଯ୍ୟକ୍ରମକୁ ମଧ୍ୟ ଏ ଅର୍ଥଦାନ କରୁଛି । ଜଳସେଚନରେ ସୁବିଧା କରାଇବା, ସମବାୟ ସମିତିକୁ ସାହାଯ୍ୟ ଦେବା, ଛୋଟ ଛୋଟ ଶିଳ୍ପର ପ୍ରତିଷ୍ଠାରେ ଏହି ଆନ୍ଦୋଳନର ଅର୍ଥ ଲଗା ଯାଉଛି ।

ଗ୍ରାମଦାନ ଗ୍ରାମମାନଙ୍କୁ ଋଣ ଓ ଗ୍ରାଣ୍ଟ ଦେବାପାଇଁ ଭାରତ ସରକାର ସ୍ୱତନ୍ତ୍ର ଭାବରେ ଏକକୋଟି ଟଙ୍କା ରଖିଛନ୍ତି । ସମୁଦାୟ ଅର୍ଥ ଖର୍ଚ୍ଚ କରିବାକୁ ସରକାର ଏ ପର୍ଯ୍ୟନ୍ତ ସମର୍ଥ ହୋଇ ନାହାନ୍ତି । ଅନେକ ରାଜ୍ୟରେ ରାଜ୍ୟ ସରକାରମାନେ ଗ୍ରାମଦାନରେ ସହାୟକ ହୋଇଛନ୍ତି । କେତେକ ରାଜ୍ୟରେ ଗ୍ରାମଦାନ ଆଇନ ପାସ୍ ହୋଇ ଗଲାଣି ଏବଂ ଅନ୍ୟ କେତେକ ରାଜ୍ୟରେ ଗ୍ରାମଦାନ ଆଇନ ପାଇଁ ବିଲସବୁ ବିଧାନ ସଭାମାନଙ୍କ କାର୍ଯ୍ୟନିର୍ଘଣ୍ଟରେ ସ୍ଥାନ ପାଇଛି । ଯେତେବେଳେ ଲୋକଙ୍କୁ ଅନ୍ୟଠାରୁ ସାହାଯ୍ୟ ପାଇ ଗ୍ରାମଦାନୀ ଗ୍ରାମସବୁକୁ ମିଳିଲା ନାହିଁ ଋଣ ଦେବାପାଇଁ ମାନ୍ଦ୍ରାଜ ସରକାର ଯଥେଷ୍ଟ ପାଣ୍ଠି ଦେଇଥିଲେ । ପ୍ରାୟ ୫୦୦ ଗ୍ରାମଦାନୀ ଗ୍ରାମକୁ ଓଡ଼ିଶା ସରକାର କୃଷିର ଉନ୍ନତି କଲେ ପ୍ରାୟ ୨୫ ଲକ୍ଷ ଟଙ୍କା ଗ୍ରାଣ୍ଟ ଦେଇଛନ୍ତି ।

ଏହିସବୁ ଆର୍ଥିକ ସାହାଯ୍ୟ ଖୁବ୍ ଉଦାର ହେଲେ ବି କେବଳ ଅଳ୍ପ କେତେକ ଗ୍ରାମଦାନୀ ଗ୍ରାମକୁ ଛାଡ଼ିଦେଲେ ସବୁ ଗ୍ରାମଦାନୀ ଗ୍ରାମର ପ୍ରୟୋଜନ ମେଣ୍ଟେଇବାକୁ ଅକୁଳାଣ ହୋଇଛି । ଯେତେବେଳେ ଲକ୍ଷ ଲକ୍ଷ ଗ୍ରାମଦାନ ହୋଇଯିବ ସେତେବେଳେ ଗ୍ରାମାଞ୍ଚଳକୁ ଅଗ୍ରାଧିକାର ଦେବାପାଇଁ ରାଜ୍ୟ ସରକାର ଓ କେନ୍ଦ୍ର-ସରକାରଙ୍କ ମତ ଓ ଯୋଜନାକୁ ଆମୂଳଚୂଳ ବଦଳାଇବାକୁ

ପଡ଼ିବ । କିନ୍ତୁ ଗ୍ରାମମାନଙ୍କରେ ଶକ୍ତି ଓ ସମ୍ପଦକୁ ସଂଗଠିତ ନ କଲା ପର୍ଯ୍ୟନ୍ତ ସରକାରୀ ସାହାଯ୍ୟ ଦ୍ୱାରା ବେଶୀ କିଛି ହୋଇ ପାରିବ ନାହିଁ । ଗାଁରେ ବୁଲି ଲୋକଙ୍କୁ କର୍ମଠ କରିବା ପାଇଁ ଏଥିପାଇଁ ଏକ ବୃହତ୍ କର୍ମୀଦଳ ଲୋଡ଼ା । ଏହିପରି କର୍ମୀଦଳଙ୍କୁ ବାଛି ତାଲିମ ଦେବାପାଇଁ କାର୍ଯ୍ୟକ୍ରମ ଗଢ଼ା ଯାଇଛି; ଏହି କର୍ମୀମାନଙ୍କୁ ଶାନ୍ତିସେବକ ଦଳରେ ସଂଗଠିତ କରାଯିବ । ଗତ-ବର୍ଷ ଏହି ଅଭିପ୍ରାୟରେ ଓଡ଼ିଶାରେ ୨୮ଟି ଶିବିର କରାଯାଇଥିଲା । ଏଥିରେ ୧୫୦୦ ଗ୍ରାମବାସୀ ଯୋଗ ଦେଇଥିଲେ । ଆଗକୁ ସର୍ବ ଭାରତୀୟ ସ୍ତରରେ ଏହିପରି ଶିବିର ସଂଗଠିତ ହେବ ।

---

# ସପ୍ତମ ଅଧ୍ୟାୟ

## ଖଦୀ

ଭାରତର ଦରିଦ୍ରତାର ପ୍ରତ୍ୟକ୍ଷ ଅନୁଭବ ଲାଭ କରି ସର୍ବପ୍ରଥମେ ୧୯୧୯ରେ ଗାନ୍ଧୀଜୀ ଖଦୀ ଆନ୍ଦୋଳନର କଳ୍ପନା କଲେ । ଧୀରେ ଧୀରେ ଏହି ଆନ୍ଦୋଳନ ବିକାଶ ଲାଭ କଲା ଏବଂ ଅନ୍ୟାନ୍ୟ ଗ୍ରାମୋଦ୍ୟୋଗ ଏହା ସହିତ ଯୋଗ କରାଗଲା । ଖଦୀ ଅହିଂସକ ସାମାଜିକ ବ୍ୟବସ୍ଥାର ଏକ ସଙ୍କେତ ତଥା ଅର୍ଥନୈତିକ ଭାବନାର ମେରୁଖୁଣ୍ଟ ହେଲା ।

ଖଦୀ କାର୍ଯ୍ୟର ଉନ୍ନତି କଲେ ୧୯୨୫ ରେ ଅଖିଳ ଭାରତ ଚରଖା ସଂଘ ସ୍ଥାପିତ ହେଲା ଏବଂ ଗ୍ରାମଶିଳ୍ପର ପୁନରୁଦ୍ଧାର ପାଇଁ ଅଖିଳ ଭାରତ ଗ୍ରାମୋଦ୍ୟୋଗ ସଂଘ ୧୯୩୫ରେ ସ୍ଥାପିତ ହେଲା ।

ଏ ଦୁଇ ଅଖିଳ ଭାରତୀୟ ସଂଘର ଉପରନ୍ତୁ ଅନ୍ୟ ସ୍ଥାନୀୟ ସଂସ୍ଥା ଏ କାମରେ ଲାଗିଥିଲେ । ୧୯୪୭ ବେଳକୁ ଖଦୀ ଓ ଗ୍ରାମଶିଳ୍ପ ଜାତ ବସ୍ତୁର ମୋଟ ଉତ୍ପାଦନ ଏକକୋଟି ଛ ଲକ୍ଷ ଟଙ୍କା ମୂଲ୍ୟର ହୋଇଥିଲା ।

ଏହା ହେଲା ସ୍ୱରାଜ ପୂର୍ବର କଥା । ସ୍ୱରାଜପରେ ଭାରତ ସରକାର ଖଦୀ ଓ ଗ୍ରାମଶିଳ୍ପର ଉନ୍ନତିପାଇଁ ଖଦୀ ଓ ଗ୍ରାମୋଦ୍ୟୋଗ କମିଶନ ପ୍ରତିଷ୍ଠା କଲେ । ଖଦୀ କମିଶନକୁ ସୂଚନା ଓ ନିର୍ଦ୍ଦେଶ ଦେବାକୁ ଏକ ବୋର୍ଡ଼ ବି ରହିଛି । ଭାରତର ବିଭିନ୍ନ ରାଜ୍ୟମାନେ ବି ଏହି ଉଦ୍ଦେଶ୍ୟରେ ରାଜ୍ୟ ସ୍ତରରେ ବୋର୍ଡ଼ ପ୍ରତିଷ୍ଠା କରିଛନ୍ତି ।

ଖଦ୍ଦୀ ଓ ଗ୍ରାମୋଦ୍ୟୋଗ କାମରେ ଲଗିଥିବା ଦୁଇହଜାରରୁ ଅଧିକ ଛୋଟ ବଡ଼ ସ୍ୱେଚ୍ଛାସେବୀ ଅନୁଷ୍ଠାନ ମଧ୍ୟ ଦେଶରେ ରହିଛି । ୧୯୭୫-୭୬ରେ ଖଦ୍ଦୀର ମୋଟ ଉତ୍ପାଦନ ଓ ବିକ୍ରୀ ଯଥାକ୍ରମେ ୨୦.୯୮ କୋଟି ଏବଂ ୨୧.୧୨ କୋଟି ଟଙ୍କାର ହୋଇଥିଲା । ସେହି ସମୟ ଭିତରେ ଗ୍ରାମୋଦ୍ୟୋଗଜାତ ବସ୍ତୁର ଉତ୍ପାଦନ ଓ ବିକ୍ରୀ ଯଥାକ୍ରମେ ୩୫.୫୫ କୋଟି ଓ ୩୪.୭୭ କୋଟି ଟଙ୍କାର ହୋଇଥିଲା । ଏହିସବୁ କାର୍ଯ୍ୟରେ ଯେତେ ପୁଞ୍ଜି ଖଟା ଯାଇଥିଲା, ତାହାର ପରିମାଣ ପ୍ରାୟ ୧୭୦ କୋଟି ଏବଂ ଏହି ପୁଞ୍ଜିରୁ ଅଧିକାଂଶ ଭାଗ କେନ୍ଦ୍ର ଓ ରାଜ୍ୟ ସରକାରମାନେ ଦେଇଛନ୍ତି ।

ଖଦ୍ଦୀ ଓ ଗ୍ରାମୋଦ୍ୟୋଗ ମାଧ୍ୟମରେ ପ୍ରାୟ ୨୬ ଲକ୍ଷ କଟାଳି ବୁଣାଳି ଓ ଅନ୍ୟଧରଣର କାରିଗରମାନେ ଆଂଶିକ ବା ପୂରା ସମୟ ପାଇଁ କାମ ପାଉଛନ୍ତି ।

ଯଦି ନିମ୍ନ କେତୋଟି ବାସ୍ତବ ଘଟଣା ପ୍ରତି ଦୃଷ୍ଟିପାତ କରୁଁ ତେବେ, ଖଦ୍ଦୀର ଗୁରୁତ୍ୱ ସହଜରେ ଅନୁମାନ କରି ହେବ ।

ବର୍ତ୍ତମାନ ଭାରତର ଜନସଂଖ୍ୟା ୬୨କୋଟି । ଏହି ସଂଖ୍ୟା ମଧ୍ୟରୁ ଶତକଡ଼ା ୮୫ କୃଷିଉପରେ ନିର୍ଭର କରି ଚଳନ୍ତି । କୃଷି ସାରାବର୍ଷ ଧରି ଲୋକଙ୍କୁ କାମ ଯୋଗାଇ ପାରେ ନାହିଁ । ବର୍ଷ ମଧ୍ୟରେ ପ୍ରାୟ ୬ମାସ କୃଷୀମାନେ ବେକାର ହୋଇ ବସି ରହନ୍ତି । ଏହା ନିଶ୍ଚିତ ଯେ ଯଦି ଲୋକେ ବର୍ଷର ଅଧା ସମୟ ମାତ୍ର କାମ କରନ୍ତି ତେବେ ସେମାନଙ୍କର ଅବସ୍ଥାର କେବେହେଲେ ଉନ୍ନତି ହୋଇପାରିବ ନାହିଁ । ବେକାର ସମୟତକ କାମରେ ଲଗାଇବା ପାଇଁ ସେମାନଙ୍କର କିଛି ଧନ୍ଦା ଦରକାର । ଏକ ବିକଳ୍ପ ପ୍ରଶ୍ନ

ଉଠୁଛି—କେତେକ ଲୋକଙ୍କୁ କୃଷିରୁ ମୁକ୍ତ କରି କଣ ଅନ୍ୟକାର୍ଯ୍ୟ ଧନ୍ଦାରେ ଲଗାଯାଇ ପାରିବ ନାହିଁ ?

ଅନ୍ୟଦେଶମାନଙ୍କରେ ଭାରତ ତୁଳନାରେ ଅପେକ୍ଷାକୃତ କମ୍ ଲୋକ କୃଷି ଉପରେ ନିର୍ଭର କରନ୍ତି । ଜାପାନରେ ଶତକଡ଼ା ୪୦ ଜଣ କୃଷି ଉପରେ ନିର୍ଭର କରନ୍ତି । ଯୁକ୍ତରାଷ୍ଟ୍ରରେ ଜନ ସଂଖ୍ୟାର ଶତକଡ଼ା ୧୫ଜଣ ମାତ୍ର କୃଷୀ । ଏ ଦେଶରେ ମଧ୍ୟ ସେ ଢଙ୍ଗରେ ଚେଷ୍ଟା କରା ନ ଯିବ କାହିଁକି ?

ଏଣୁ ସ୍ୱରାଜପରେ ଆମ ନେତାମାନେ ଗାଁ ଗହଳରୁ ଲୋକଙ୍କୁ ଆଣି ସହର ଅଞ୍ଚଳରେ କାମ ଯୋଗାଇ ଦେବ ଏହି ବିଶ୍ୱାସରେ ବଡ଼ବଡ଼ ଶିଳ୍ପ କାରଖାନା ବସାଇଲେ । ଏହାର ଫଳ କଣ ହେଲା ?

୧୯୫୦-୫୧ରେ ଆମ ଦେଶରେ କାମ ଖୋଜୁଥିବା ସମର୍ଥ ଲୋକଙ୍କ ସଂଖ୍ୟା ଯେତେଥିଲା ୧୯୫୯-୬୦ରେ ତାହା ଅପେକ୍ଷା ୩କୋଟି ୨୦ ଲକ୍ଷ ଅଧିକ ବଢ଼ିଗଲା । ଏହି ସମୟ ମଧ୍ୟରେ ଯେଉଁ ବଡ଼ବଡ଼ ଶିଳ୍ପ କାରଖାନା ସ୍ଥାପିତ ହେଲା ସେ ସବୁ ମୋଟ ୧୨୦ ଲକ୍ଷ ଲୋକଙ୍କୁ କାମ ଯୋଗାଇ ପାରିଲା । ଏଣୁ ଏହି ସଂଖ୍ୟା ପୂର୍ବୋକ୍ତ ୩ କୋଟି ୨୦ ଲକ୍ଷର ମୋଟେ ଶତକଡ଼ା ୪ ଭାଗ ମାତ୍ର ଥିଲା । ଅବଶିଷ୍ଟ ଶତକଡ଼ା ୯୬ ଜଣଙ୍କୁ ନିଜ ପନ୍ଥା ଉପରେ, ବିଶେଷ କରି କୃଷି ଉପରେ ଭରଷା ରଖିବାକୁ ହେଲା । ୧୯୫୦ ପୂର୍ବରୁ ଯେଉଁ କୋଟି କୋଟି ଲୋକ ଅର୍ଦ୍ଧ ବେକାର ବା ପୂରା ବେକାର ଥିଲେ ଏବଂ ୧୯୫୦ ପରେ ମଧ୍ୟ ବେକାର ରହିଥିଲେ ସେମାନଙ୍କ ସୁମାରି ପୂର୍ବୋକ୍ତ ୩କୋଟି ୨୦ ଲକ୍ଷ ଲୋକଙ୍କ ଭିତରେ କରାଯାଇ ନାହିଁ ।

୨୦ଗୁଣ ଅଧିକ ଲୋକଙ୍କୁ କାମ ଯୋଗାଇବା ପାଇଁ ବଡ଼ବଡ଼ କଳ କାରଖାନା ୨୦ ଗୁଣ ବଢ଼ାଇ ଦିଆଯାଇ ପାରିବ ନାହିଁକି ?

ଏହା ସମ୍ଭବ ନୁହେଁ । କାରଣ ଏତେ କାରଖାନା ବସାଇ-ବାକୁ ଆମର ପୁଞ୍ଜି ନାହିଁ । ଦୃଷ୍ଟାନ୍ତ ସ୍ୱରୂପ ଲୁଗା କାରଖାନାଟିଏ ବସାଇବାକୁ ଏକ କୋଟି ଟଙ୍କାରୁ ଅଧିକ ପୁଞ୍ଜି ଲଗିବ ଅଥଚ ତାହା ପ୍ରାୟ ୫୦୦୦ ଲୋକଙ୍କୁ କାମ ଯୋଗାଇ ପାରିବ । ଏହାର ଅର୍ଥ ହେଲା ଯେ ଜଣେ ବ୍ୟକ୍ତିକୁ ଧନ୍ଦା ଦେବାପାଇଁ ୨୦ହଜାର ଟଙ୍କାର ପୁଞ୍ଜି ଖଟାଇବାକୁ ହେବ । ଏଣୁ ଚାରିକୋଟି ଲୋକଙ୍କୁ କାମ ଯୋଗାଇବା ଭଳି ବୃହତ୍ ଶିଳ୍ପ କାରଖାନା ବସାଇବାକୁ ୮୦,୦୦୦ କୋଟି ଟଙ୍କାର ପୁଞ୍ଜି ଆବଶ୍ୟକ ହେବ । ଏ ଦେଶରେ ବଡ଼ବଡ଼ ଶିଳ୍ପ ଓ ବ୍ୟବସାୟରେ ଏପର୍ଯ୍ୟନ୍ତ ଯେଉଁ ପୁଞ୍ଜି ଖଟାଯାଇଛି ତାର ପରିମାଣ ୫୦୦୦ କୋଟିରୁ କମ ହେବ ।

ଏଣୁ ଏତେ ଲୋକଙ୍କୁ ଧନ୍ଦା ଯୋଗାଇବାର ଅନ୍ୟ ପନ୍ଥାର ଆଶ୍ରୟ ନେବାକୁ ପଡ଼ିବ । ଏହାର ବାସ୍ତବ ପନ୍ଥା ହେଉଛି ଯେ ଏଭଳି ଶ୍ରେଷ୍ଠଶ୍ରେଷ୍ଠ ଗ୍ରାମୋଦ୍ୟୋଗର ସାହାଯ୍ୟ ନେବୁ ଯହିଁରେ କମ ପୁଞ୍ଜି ଲୋଡ଼ା ହୁଏ ଏବଂ ଯେଉଁ ଗୁଡ଼ିକ ମଣିଷର ଶ୍ରମକୁ ବେଶୀ ପରିମାଣରେ କାମରେ ଲଗାଏ । ଜଣେ ବ୍ୟକ୍ତିକୁ ଅମ୍ବର ଚରଖା ଜରିଆରେ ଜୀବିକା ଯୋଗାଇବା ପାଇଁ ପ୍ରାୟ ଟ୨୫୦ଙ୍କା ମୁଳଧନ ଦରକାର । ହାତ ତନ୍ତରେ ଗୋଟିଏ ଲୋକକୁ ନିଯୁକ୍ତ କରିବାକୁ ମୁଳଧନ ପ୍ରାୟ ଟ୩୦୦ଙ୍କା ଦରକାର । ସରଳ ଯନ୍ତ୍ରପାତିର ସାହାଯ୍ୟ ନେବାଦ୍ୱାରା ଅର୍ଦ୍ଧ ବେକାର ବା ପୁରା ବେକାର ହୋଇ ବସିଥିବା କୋଟିକୋଟି ଲୋକଙ୍କୁ କାମ ଯୋଗାଇବା ସହଜ ହେବ ।

ଅବଶ୍ୟ ବଡ଼ବଡ଼ ଶିଳ୍ପ କାରଖାନାରେ ନିର୍ମିତ ବସ୍ତୁର ମୂଲ୍ୟଠାରୁ କ୍ଷୁଦ୍ର ଶିଳ୍ପଜାତ ବସ୍ତୁର ମୂଲ୍ୟ ଟିକିଏ ବେଶୀ । ଘଣା ଚଳାଇ ଏକ କେଜି ତେଲ ବାହାର କରିବା ପାଇଁ ବା ହାତ ତନ୍ତରେ ଖଣ୍ଡିଏ ଲୁଗା ବୁଣିବାରେ କଳରେ କରିବାଠାରୁ ବେଶୀ ଶ୍ରମ କରିବାକୁ ପଡ଼େ । ମାତ୍ର ଅନ୍ୟ ଏକ ଦୃଷ୍ଟି କୋଣରୁ ଏହାକୁ ବିଚାର କରାଯାଇ ପାରେ ।

ପାଞ୍ଚଶହ ଲୋକ ସଂଖ୍ୟାବିଶିଷ୍ଟ ଗୋଟିଏ ଗ୍ରାମର କଥା ଧରାଯାଉ । ଏହି ଗ୍ରାମର ଲୋକେ ବର୍ଷକୁ ଯେଉଁ ଲୁଗାପଟା ବ୍ୟବହାର କରନ୍ତି ତାର ଦାମ, ମୁଣ୍ଡ ପିଛା ହାରାହାରି ୨୦ ଟଙ୍କା ହିସାବରେ ଧରିଲେ ପାଞ୍ଚଶହ ଲୋକଙ୍କ ପାଇଁ ଦଶ ହଜାର ଟଙ୍କା ହେବ । ଲୋକେ ଧାନ, ବିରି, ମୁଗ, ଗହମ ଇତ୍ୟାଦି ଫସଲ ବିକି ଲୁଗା କିଣନ୍ତି । ମନେ କରନ୍ତୁ ଲୋକଙ୍କୁ ଯଥେଷ୍ଟ ବେକାର ସମୟ ଥିବାରୁ ସେମାନେ ନିଜପାଇଁ ଆବଶ୍ୟକ ଲୁଗାପଟା ଗାଁ ଭିତରେ ତିଆରି କରିବା ଆରମ୍ଭ କରିଦେଲେ । ତେବେ ଗ୍ରାମରେ ୧୦,୦୦୦ଟଙ୍କା ବାର୍ଷିକ ସଂଚୟ ହୋଇ ପାରିବ । ଅବଶ୍ୟ ତୁଳାର ମୂଲ୍ୟ ବାବଦକୁ କିଛି କାଟି ଦେଲେ ଲୋକେ ମୋଟରେ ବାର୍ଷିକ ଅନ୍ୟୂନ ୭୫୦୦ ଟଙ୍କା ସଞ୍ଚୟ କରି ପାରିବେ । ଏହି ଟଙ୍କାଟା ଗ୍ରାମର ମୋଟ ଭୂରାଜସ୍ୱର ସାତ ଆଠଗୁଣ ହେବ ।

ଚିନି, ତେଲ, ସାବୁନ, ଜୋତା, କାଗଜ ପ୍ରଭୃତି ଗ୍ରାମର ନିତ୍ୟ ବ୍ୟବହାର୍ଯ୍ୟ ଜିନିଷ ସବୁ ପାଇଁ କଞ୍ଚାମାଲ ଗ୍ରାମରେ ମିଳିଥାଏ । ପ୍ରତ୍ୟେକ ଗ୍ରାମରେ ଯଦି କ୍ଷୁଦ୍ର କ୍ଷୁଦ୍ର ଗ୍ରାମୋଦ୍ୟୋଗ ମାଧ୍ୟମରେ ଏ ସବୁ ଜିନିଷ ଉତ୍ପାଦନ ବ୍ୟବସ୍ଥା କରାଯାଏ ତେବେ ପ୍ରତ୍ୟେକ ଗ୍ରାମ

ଯେ ବିପୁଳ ପରିମାଣରେ ଅର୍ଥ ସଞ୍ଚୟ କରିପାରିବ ତାହା ଆମେ ସହଜରେ କଳନା କରି ପାରିବା ।

ଅବଶ୍ୟ ଯେଉଁ ଲୋକଙ୍କର ପୁଞ୍ଜି ସମ୍ପୂ କମ ଥାଏ, ସେମାନଙ୍କ ପାଇଁ ଅଧିକା ଦାମ ଲୋଡ଼ା ନାହିଁ । ସେମାନେ କହି ପାରନ୍ତି ଆମକୁ ତ ସବୁ ଜିନିଷ କିଣିବାକୁ ପଡ଼ୁଛି । ଆମେ ଖଦି ବା ଗ୍ରାମୋଦ୍ୟୋଗ ଜିନିଷ ଅଧିକା ଦାମ ଦେଇ କିଣିବୁ କାହିଁକି ? ଏହାକଲେ ଆମର ବହୁତ କ୍ଷତି ହେବ ।

ଆଜି ଯେ କୋଟି କୋଟି ଲୋକ ବେକାର ରହୁଛନ୍ତି, ତାର କାରଣ ଖୁବ୍ କମ ଲୋକ ସେମାନଙ୍କର ହାତ ତିଆରି ଜିନିଷ କିଣିବାକୁ ପସନ୍ଦ କରନ୍ତି । ଏଣୁ ବହୁ ଲୋକ ପ୍ରାୟ ଅନାହାରରେ ରହୁଛନ୍ତି । ଏବଂ ସରକାର ଏମାନଙ୍କୁ ମାଗଣା ସାହାଯ୍ୟ ରୂପେ କୋଟି କୋଟି ଟଙ୍କା ପ୍ରତିବର୍ଷ ଦେଉଛନ୍ତି । ଏହି ଟଙ୍କାତକ ଆମର ପକେଟରୁ ଯାଉଛି । ସମାଜବାଦ ସୃଷ୍ଟି ଥିବା ଏକ ସଭ୍ୟ ଦେଶରେ ବିଶେଷତ, ଯୁକ୍ତରାଷ୍ଟ୍ର ପରି ପ୍ରତ୍ୟେକ ବ୍ୟକ୍ତିକୁ ଲାଭଜନକ ଧନ୍ଦା ଯୋଗାଇ ଦେବା କିମ୍ବା ଅନ୍ନ ବସ୍ତ୍ରର ସଂସ୍ଥାନ କରିବା ସମାଜ ଓ ସରକାରର ଦାୟିତ୍ୱ ଅଟେ । ଆମେ ସହଜରେ ଦେଖି ପାରିବା ଯେ ଦୁସ୍ଥ ଲୋକଙ୍କୁ ଭିକ୍ଷା ବା ମାଗଣା ପଇସା ଦେବା ଅପେକ୍ଷା ସେମାନଙ୍କ ଦ୍ୱାରା ନିର୍ମିତ ବସ୍ତୁକୁ ସାମାନ୍ୟ କିଛି ଅଧିକ ଅର୍ଥ ଦେଇ କିଣିବା ଅଧିକ ଶ୍ରେୟସ୍କର । ଧନ୍ଦା ଆତ୍ମସମ୍ମାନ ଦିଏ ମାତ୍ର ଭିକ୍ଷା ଆତ୍ମସମ୍ମାନ ନାଶ କରେ ।

ଏଣୁ ଅଧିକ ଦାମ ପଡ଼ୁ ପଛେ ଅଭାବଗ୍ରସ୍ତ ଲୋକଙ୍କଦ୍ୱାରା ତିଆରି ହେଉଥିବା ପଦାର୍ଥ କିଣିବା ପାଇଁ ସର୍ବୋଦୟ ଆନ୍ଦୋଳନ ସମସ୍ତଙ୍କୁ ଅନୁରୋଧ କରେ । ଯେଉଁ ଅଧିକା ଦାମ ଦିଆଯିବ

ତାହାକୁ ଦାନ ସୂତ୍ରରେ ଦିଆଯାଉଛି ବୋଲି ବର୍ଣ୍ଣନା କରାଯାଇ ପାରେ । ଆମର ମନେ ରଖିବା ଉଚିତ ଯେ ସବୁ ବେକାର ଲୋକଙ୍କୁ ମାଗଣା ପଡ଼ ଦେଇ ପୋଷିବା ପାଇଁ ଆମେ ସ୍ଥିର କଲେ ସେଥିପାଇଁ ଆମକୁ ଅଧିକ ଟିକସ ଦେବାକୁ ପଡ଼ିବ ।

ସର୍ବୋଦୟ ଆନ୍ଦୋଳନ କରୁଣା ଓ ସ୍ୱେଚ୍ଛା ପ୍ରଣୋଦିତ କର୍ମର ଭିତ୍ତି ଉପରେ ସମାଜକୁ ପ୍ରତିଷ୍ଠା କରିବାକୁ ଚାହେଁ । ମୁଁ ଲୋକଙ୍କୁ ଦୁଃଖ ଅଭାବରେ ପଡ଼ିଥିବାର ଦେଖି ବ୍ୟଥା ଅନୁଭବ କରେ । ଏଣୁ ସେମାନଙ୍କୁ ସାହାଯ୍ୟ କରିବାକୁ ମୁଁ କିଛି କଲି । ଏହାହିଁ କରୁଣାର ଭିତ୍ତି ଉପରେ ପ୍ରତିଷ୍ଠିତ ସ୍ୱେଚ୍ଛାକୃତ କର୍ମ । ଯେତେବେଳେ ବହୁ ଲୋକ ଏହିପରି କରୁଣାପୂର୍ଣ୍ଣ କର୍ମ କରନ୍ତି, ତାହା ଏପରି ଏକ ସମାଜ ସୃଷ୍ଟି କରେ ଯାହାକି ସ୍ନେହ, ପ୍ରେମ, ଶ୍ରଦ୍ଧା, ଦୟା ସହାନୁଭୂତି ପ୍ରଭୃତି ମାନବିକ ଅନୁଭୂତିରେ ପୂର୍ଣ୍ଣ ।

ଏଣୁ ଭୂଦାନ ଓ ଗ୍ରାମଦାନ ପରି ଖଦି ଓ ଗ୍ରାମଶିଳ୍ପର ପଛରେ ମଧ୍ୟ ଏହି କରୁଣା ଓ ପରସ୍ପର ସୁଖ ଦୁଃଖରେ ସମଭାଗୀ ହେବାର ଚିନ୍ତାଧାରା ରହିଛି ।

ଯେଉଁ ମୌଳିକ ଲକ୍ଷ୍ୟ ସାଧନା ଉଦ୍ଦେଶ୍ୟରେ ଖଦି ଓ ଗ୍ରାମୋଦ୍ୟୋଗ ଆନ୍ଦୋଳନ ଚାଲିଛି, ସେହି ଲକ୍ଷ୍ୟରେ କୌଣସି ପ୍ରକାର ଖିଲାପ ନ କରି ଖଦି ଓ ଗ୍ରାମୋଦ୍ୟୋଗ ଜାତ ଦ୍ରବ୍ୟର ମୂଲ୍ୟ ଯଥା ସମ୍ଭବ କମାଇ ଦେବାକୁ ଯତ୍ନ କରାଯାଉଛି । ସାଧାରଣ ଚରଖାରେ ଯେତିକି ସୂତା କଟାଯାଏ, ତାର ସାତ ଆଠ ଗୁଣ ସୂତା ଅମ୍ବର ଚରଖାରେ ସେହି ସମୟ ମଧ୍ୟରେ କଟାଯାଇ ପାରୁଛି । ଠିକ୍ ସେହିପରି ଅନ୍ୟ ଗ୍ରାମୋଦ୍ୟୋଗ ମାନଙ୍କରେ ମଧ୍ୟ ଉନ୍ନତ ଧରଣର ଯନ୍ତ୍ରପାତିର ବ୍ୟବହାର କରାଯାଉଛି । ବିଦ୍ୟୁତ ଶକ୍ତି ଯେଉଁଠି

ମିଳୁଛି, ସେଠାରେ ଗ୍ରାମୋଦ୍ୟୋଗ ମାନଙ୍କରେ ତା'ର ଉପଯୋଗ କରାଯାଉଛି । ଅବଶ୍ୟ ବିଦ୍ୟୁତ ଶକ୍ତିର ଉପଯୋଗ ଦ୍ୱାରା ଯେପରି ବେକାର ସମସ୍ୟା ନ ବଢ଼ି ବରଂ ତାହା ଯେପରି କାରିଗର ମାନଙ୍କର ପରିଶ୍ରମର ପରିପୂରକ ହୁଏ ଏବଂ ସେମାନଙ୍କୁ ଅଧିକ ଉତ୍ପାଦନର ସାହାଯ୍ୟ କରେ, ସେଥିପ୍ରତି ଦୃଷ୍ଟି ଦିଆଯାଉଛି । ଉନ୍ନତ ଧରଣର ଯନ୍ତ୍ର ସାହାଯ୍ୟରେ ଅପେକ୍ଷାକୃତ ଅଧିକ ଉତ୍ପାଦନ ହୋଇ ପାରୁଛି । ଉନ୍ନତତର ଯନ୍ତ୍ରପାତିର ଉଦ୍ଭାବନ ପାଇଁ ଅବିରାମ ଗବେଷଣା ଓ ପ୍ରୟୋଗ ଚାଲିଛି ।

କିନ୍ତୁ ତଥାପି ଲୋକେ ଅନୁଭବ କରୁଛନ୍ତି ଯେ ଖଦୀ ଓ ଗ୍ରାମଶିଳ୍ପ ଜାତ ଦ୍ରବ୍ୟର ମୂଲ୍ୟ ବହୁତ ବେଶୀ ଚଢ଼ା ରହିଛି । ଏଣୁ ସାହାଯ୍ୟ କରିବାକୁ ସରକାରଙ୍କୁ ଅନୁରୋଧ କରାଯିବାରୁ ସରକାର ଖଦୀର ମୂଲ୍ୟ ଶତକଡ଼ା ୧୯ଭାଗ ଉପରେ ସାହାଯ୍ୟ ଦେବାକୁ ରାଜି ହୋଇଥିଲେ । ଏହାଦ୍ୱାରା ଗରାଖଙ୍କୁ ଖଦୀର ଦାମ ୧୦୦ ପଇସା ଜାଗାରେ ୮୧ ପଇସା ମାତ୍ର ଦେବାକୁ ପଡ଼ିଲା । ତଥାପି ମିଲ ଲୁଗାର ଦାମଠାରୁ ଖଦୀ ଦାମ ଚଢ଼ା ରହିଲା । ଏହା ସତ୍ତ୍ୱେ ବର୍ଷକୁ ୧୫।୧୬ କୋଟି ଟଙ୍କାର ଖଦୀ କିଣିବା ଭଳି ଲୋକ ଦେଶରେ ରହିଛନ୍ତି । ମାତ୍ର ଏହା ସମୁଦ୍ରକୁ ଶଙ୍ଖେ ପାଣି ପରି । ଖଦୀ ଓ ଗ୍ରାମୋଦ୍ୟୋଗ ପ୍ରାୟ ୩୦ ଲକ୍ଷ କଟାଳି, ବୁଣାଳି ଏବଂ କାରିଗର ମାନଙ୍କୁ ପୁରା ବା ଆଂଶିକ ସମୟ ଧନ୍ଦା ଦେଇ ପାରିଛି । କିନ୍ତୁ ଏହାର ଅନ୍ୟୁନ ୨୦ଗୁଣ ଲୋକ ଆହୁରି ବେକାର ରହୁଛନ୍ତି ଯେଉଁମାନଙ୍କ ପାଇଁ କି ଏହି ଧରଣର ଧନ୍ଦା ଲୋଡ଼ା । ସମଗ୍ର ଭାରତ ବର୍ଷର ବସ୍ତ୍ରର ଚାହିଦା ମେଣ୍ଟାଇବାକୁ ହେଲେ ଖଦୀ ଉତ୍ପାଦନ ଶହେଗୁଣ ପ୍ରସାରିତ ହେବା ଦରକାର କରୁଛି ।

ଏପର୍ଯ୍ୟନ୍ତ ସେବା କାର୍ଯ୍ୟରେ ନିଜକୁ ଉତ୍ସର୍ଗ କରିଥିବା କର୍ମୀ ଗୋଷ୍ଠୀ ଦ୍ୱାରା ହିଁ ଗ୍ରାମୋଦ୍ୟୋଗ ଓ ଖଦୀ କାମ ଚାଲିଛି । ମାତ୍ର ଗ୍ରାମ-ବାସୀମାନେ ଖଦୀ ଓ ଗ୍ରାମୋଦ୍ୟୋଗ କାମ ହାତକୁ ନେବା ଦ୍ୱାରା ହିଁ ଏହି ସବୁ କାମ ବିଶାଳ ଆକାରରେ ପ୍ରସାରିତ ହୋଇ ପାରିବ ।

ଏଥିପାଇଁ ଦୁଇବର୍ଷ ତଳେ ବିନୋବାଜୀଙ୍କ ନିର୍ଦ୍ଦେଶରେ ଖଦୀର ମତ ଓ କାର୍ଯ୍ୟପ୍ରଣାଳୀ ନେଇ ଏକ ପରିବର୍ତ୍ତନ କରା-ଯାଇଛି । ଏହି ପରିବର୍ତ୍ତନ ଅନୁସାରେ ଏଣିକି ଗୋଟିଏ ଗୋଟିଏ ସମ୍ପୂର୍ଣ୍ଣ ଗାଁକୁ ନିଜର ଲୁଗାର ଆବଶ୍ୟକତା ପୂରଣ କରିବାପାଇଁ ଖଦୀ ଉତ୍ପନ୍ନ କରିବାକୁ ପ୍ରବର୍ତ୍ତାଯିବ । ଖଦୀ ବିକ୍ରିରେ ଖଦୀ ମୂଲ୍ୟ ଉପରେ ସରକାର ଯେଉଁ ଶତକଡ଼ା ୧୯ ଭାଗ ସାହାଯ୍ୟ ଦେଉଥିଲେ ତାହାକୁ ମାଗଣାରେ ଖଦୀ ବୁଣାଇ ଦେବା ଯୋଜନାରେ ପରିବର୍ତ୍ତନ କରି ଦିଆଯାଇଛି ।

ଏହି ଯୋଜନା ଅନୁସାରେ ହାତ କଟା ସୂତାକୁ ବୁଣାଇ-ବାରେ ଯାହା କିଛି ଖର୍ଚ୍ଚ ପଡ଼ୁଛି ସେହି ଖର୍ଚ୍ଚକୁ ସରକାର ବହନ କରୁଛନ୍ତି । ନିଜ ଜମିରେ କପାଚାଷ କରି ଯେଉଁ ଗ୍ରାମବାସୀ ନିଜ ହାତରେ ଅବସର ବେଳେ ସୂତା କାଟୁଛନ୍ତି, ତାହାକୁ ଲୁଗା ପାଇଁ ନଗଦ ପଇସା ପ୍ରାୟ ଖର୍ଚ୍ଚ କରିବାକୁ ପଡ଼ୁନାହିଁ ।

ବସ୍ତୁତଃ ଗ୍ରାମଦାନୀ ଗ୍ରାମମାନେ ହିଁ ଏକ ନୂଆ ଖଦି ଯୋଜନାର ପ୍ରସାର ପାଇଁ ଅତି ଉପଯୁକ୍ତ ସ୍ଥାନ ଅଟେନ୍ତି । ଖଦୀ ଓ ଗ୍ରାମୋଦ୍ୟୋଗକୁ ନ ଧରିଲେ ଗ୍ରାମଦାନୀ ଗ୍ରାମମାନଙ୍କର ଅର୍ଥନୈତିକ ପୁନରୁଜୀବନ ସମ୍ଭବ ନୁହେଁ । ପୂର୍ବୋକ୍ତ ବିବିଧ କାର୍ଯ୍ୟକ୍ରମରେ କେବଳ ଖଦୀର ଉଲ୍ଲେଖ ଥିଲେ ବି ଏହା ଅନ୍ୟାନ୍ୟ ଗ୍ରାମୋଦ୍ୟୋଗ-

ମାନଙ୍କର ବି ପ୍ରତିନିଧିତ୍ୱ କରୁଛି । ଏହି ଶିଳ୍ପସବୁ ଖଦିଠାରୁ କମ ଗୁରୁତ୍ୱପୂର୍ଣ୍ଣ ନୁହନ୍ତି ।

ପ୍ରତ୍ୟେକ ଗ୍ରାମଦାନ ଗ୍ରାମର ଗ୍ରାମସଭା ଶପଥ ନେବା ଉଚିତ ଯେ ସେ ଗାଁର ଯେତେ ଲୁଗାପଟା ଆବଶ୍ୟକ ହେଉଛି ସେ ସବୁକୁ ଗାଁ ଭିତରେ ହିଁ ତିଆରି କରିବା ବ୍ୟବସ୍ଥା ବର୍ଷେ ଦେଢ଼ବର୍ଷ ଭିତରେ କରାଯିବ । ଦେଶ ଭିତରେ ଅନେକ ଖଦି ଅନୁଷ୍ଠାନକୁ ଯଦି ଗ୍ରାମସଭା ଅନୁରୋଧ କରେ ତେବେ ଏହା ସେ ଗ୍ରାମରେ ଖଦି ଉତ୍ପାଦନ କାମ ଆରମ୍ଭ କରିବାରେ ସାହାଯ୍ୟ କରିବ ।

୫୦୦ ଅଧିବାସୀ ବିଶିଷ୍ଟ ପୂର୍ବୋକ୍ତ ଗ୍ରାମର ଦୃଷ୍ଟାନ୍ତକୁ ଆମେ ଯଦି ଫେରିଯାଉ, ତେବେ ସହଜରେ ଦେଖି ପାରିବା ଯେ ଗ୍ରାମଟି ଯେ ଲୁଗା ବାବଦକୁ କେବଳ ଟ ୭୫୦୦ଙ୍କା ସଞ୍ଚୟ କରି ପାରିଛି ତାହାନୁହେଁ, ମାତ୍ର ଗାଁର ବୁଣାଳିମାନେ ବି ଖଦି କମିଶନଠାରୁ ବୁଣେଇବା ମଜୁରି ବାବଦକୁ ଊଣା ଅଧିକ ୨୦୦୦ ଟଙ୍କା ଉପାର୍ଜନ କରି ପାରିବ ।

ଗ୍ରାମରେ ବୁଣାଳୀ ନ ଥିବେ ତ ବାହାରୁ ଏକ ବୁଣାଳୀକୁ ଡାକିଆଣି ଗାଁରେ ରହିବାକୁ ମଙ୍ଗେଇ ନିଆ ଯାଇପାରେ କିମ୍ବା ଗାଁର କେତେକ ବ୍ୟକ୍ତି ବୁଣେଇ ଶିଖିନେଇ ତାହାକୁ ନିଜର ଜୀବିକା କରି ପାରନ୍ତି । ଏଥିପାଇଁ ଆର୍ଥିକ ଓ କାରିଗରି ସାହାଯ୍ୟ ଖଦି କମିଶନରୁ ମିଳିବ ।

## ଅଷ୍ଟମ ଅଧ୍ୟାୟ

## ଖଦୀର ବ୍ୟାପକ ଗୁରୁତ୍ୱ

ନିତ୍ୟବ୍ୟବହାର୍ଯ୍ୟ ବସ୍ତୁମାନଙ୍କର ମୂଲ୍ୟବୃଦ୍ଧି ଏବଂ ବ୍ୟବସାୟୀଙ୍କର ଲାଭ ମନୋବୃତ୍ତି ଏହି ଦୁଇଟି ହେଲା ଆମ ଦେଶକୁ ଘାରିଥିବା ସବୁଠୁ ଉତ୍କଟ ବ୍ୟାଧି । ଖଦୀ ଓ ଗ୍ରାମୋଦ୍ୟୋଗ ଏହି ଦୁଇ ବ୍ୟାଧିର ପ୍ରତିରୋଧରେ ଏକ ମୂଲ୍ୟବାନ ଅଂଶ ଗ୍ରହଣ କରିପାରିବ । ମୂଲ୍ୟ ବୃଦ୍ଧିର ଗୋଟିଏ କାରଣ ହେଉଛି ଏହାହିଁ ଯେ ଇସ୍ପାତ କାରଖାନା, ଇଂଜିନ ତିଆରି କାରଖାନା ଓ ସେହିପରି ଅନ୍ୟାନ୍ୟ ବଡ଼ ବଡ଼ ଶିଳ୍ପ ପ୍ରତିଷ୍ଠା କାର୍ଯ୍ୟରେ ଅପର୍ଯ୍ୟାପ୍ତ ଅର୍ଥବ୍ୟୟ କରାଯାଉଛି । ଏହି ସବୁକାମ ଦେଶ ପାଇଁ ଦରକାର, ସନ୍ଦେହ ନାହିଁ । ମାତ୍ର ଦେଶର ଶ୍ରମ ବୃଦ୍ଧିରେ ସେମାନଙ୍କର ଦାନ କେତେ ତାହା କେତେବର୍ଷ ପରେ ଯାଇ ଜଣାପଡ଼ିବ । ଲୋକେ ଯେଉଁ ସବୁ ଜିନିଷ ହାଟ ବଜାରରେ କିଣିବାକୁ ଚାହାନ୍ତି, ସେ ସବୁ ଜିନିଷ ଏମାନେ ପ୍ରଥମ ଅବସ୍ଥାରେ ଉତ୍ପାଦନ କରନ୍ତି ନାହିଁ । କିନ୍ତୁ ସେମାନଙ୍କ ପିଛା ଯେଉଁସବୁ ଅର୍ଥ ବ୍ୟୟ କରାଯାଉଛି ତାହା ଶ୍ରମିକ, କିରାଣି କର୍ମଚାରୀ କାନଟ୍ରାକ୍ଟି ପ୍ରଭୃତିଙ୍କ ପକେଟକୁ ଯାଉଛି, ଯେଉଁମାନେ କି ପଇସାରେ ନାନା ପ୍ରକାର ଜିନିଷ କିଣିବାକୁ ଚାହାନ୍ତି । ଏଣୁ କିଣିବା ପାଇଁ ଜିନିଷର ପରିମାଣଠାରୁ ଚଳୁଥିବା ଟଙ୍କା ପଇସାର ପରିମାଣ ବେଶୀ ହେଉଛି । ଏହା ମୂଲ୍ୟ ବୃଦ୍ଧି ଘଟାଉଛି ।

ଖାଉଟି ଜିନିଷର ଉତ୍ପାଦନ ବୃଦ୍ଧି ହିଁ ଏହି ସମସ୍ୟାର ପ୍ରତିକାରର ପନ୍ଥା ଅଟେ ।

ଗ୍ରାମ ଶିଳ୍ପ ମାଧ୍ୟମରେ ଏହି ଉତ୍ପାଦନ ବୃଦ୍ଧି କରାଯାଇ ପାରିବ । ପୂର୍ବରୁ ଆମେମାନେ ପ୍ରକାଶ କରିଛୁଁ ଯେ କୋଟି କୋଟି କାର୍ଯ୍ୟକ୍ଷମ ଭାରତୀୟ ଆଂଶିକ ଭାବରେ ବା ପୂରା ବେକାର ହୋଇ ବସିଛନ୍ତି । ହିସାବ କରାଯାଇଛି ଯେ ପ୍ରତିଦିନ ଏହିପରି ଯେତେ ଶ୍ରମର ଅପଚୟ ଘଟୁଛି ତାହା ଦେଢ଼ କୋଟି ଲୋକର ପୂରା ସମୟର ଶ୍ରମସହ ସମାନ । ମୁଣ୍ଡପିଛା ଦୈନିକ ମଜୁରୀ ଅତି କମରେ ଟଙ୍କାଟିଏ ବୋଲି ଧରାଯାଏ ତେବେ ଏହି ବେକାରି ହେତୁ ଘଟୁଥିବା କ୍ଷତିର ପରିମାଣ ବର୍ଷକୁ ୨୫୦୦ କୋଟି ଟଙ୍କା ହେବ ।

ଏହି ପରିମାଣଟା ଅତି ବିଶାଳ । ଆମେ ପୂର୍ବରୁ ପ୍ରକାଶ କରିଛୁ ଯେ ଖଦୀ ଓ ସେହିପରି ଅନ୍ୟାନ ଛୋଟ ଛୋଟ ଶିଳ୍ପହିଁ ଏହି ସବୁ ବେକାର ଲୋକଙ୍କୁ କାମ ଦେଇପାରେ । ଖୁବ୍ ବ୍ୟାପକ ଆକାରରେ ଏହିସବୁ ଶିଳ୍ପର ପ୍ରସାର ଫଳରେ ହଜାର ହଜାର କୋଟି ଟଂକାର ଉତ୍ପାଦନ ଅବଶ୍ୟ ବଢ଼ିବ ଏବଂ ଦରଦାମ ବୃଦ୍ଧିକୁ ରୋକିବାରେ ଏହାର ସୁପରିଣାମ ହେବ ।

ଅତି ମାତ୍ରାରେ ଲୋଭଖୋରି ମନୋବୃତ୍ତି ମୂଲ୍ୟ ବୃଦ୍ଧିର ଅନ୍ୟ ଏକ କାରଣ । ଲୁଗା ଚିନି ତେଲ ସାବୁନ ପ୍ରଭୃତି ଉତ୍ପାଦନ କରୁଥିବା ସମସ୍ତ କାରଖାନା ବ୍ୟକ୍ତିଗତ ମାଲିକାନାରେ ରହିଛି । ଏ ସବୁର ବେପାର ମଧ୍ୟ ବ୍ୟକ୍ତିଗତ ବେପାରୀଙ୍କ ହାତରେ ରହିଛି । ଏଣୁ କାରଖାନା ମାଲିକ ଓ ବ୍ୟବସାୟୀମାନେ ଯଥାସମ୍ଭବ ବେଶୀ ଲାଭ ଉଠାଇବାକୁ ବ୍ୟସ୍ତ । ସରକାର ସେମାନଙ୍କୁ ନିୟନ୍ତ୍ରଣ କରିବାକୁ ଚେଷ୍ଟା କରୁଛନ୍ତି କିନ୍ତୁ ବିଶେଷ ସଫଳ ହେଉ ନାହାନ୍ତି, କଣ୍ଟ୍ରୋଲ ଫଳରେ ଅଳ୍ପ କେତେକ କର୍ମଚାରୀଙ୍କ ହାତରେ କ୍ଷମତା

କେନ୍ଦ୍ରୀଭୂତ ହୋଇଯାଇଛି । ଫଳରେ ଅର୍ଥନୀତି, ଦୁର୍ନୀତି ଓ ପରିଚାଳନାରେ ବିଭ୍ରାଟ ମଥା ଟେକୁଛି ।

ଇସ୍ପାତ, ବିଦ୍ୟୁତ, ଓଜନଦାର ଯନ୍ତ୍ର ପ୍ରଭୃତି ଶିଳ୍ପର ସରକାର ରାଷ୍ଟ୍ରୀକରଣ କରିଛନ୍ତି । ଖାଉଟି ଦ୍ରବ୍ୟର ଶିଳ୍ପ ସବୁକୁ ମଧ୍ୟ ସରକାର କଣ ହାତକୁ ନେବା ଉଚିତ । ରାଷ୍ଟ୍ରର ମାଲିକାନା ବା ରାଷ୍ଟ୍ରୀକରଣ ଫଳରେ ସରକାର ଯନ୍ତ୍ରରେ ହିଁ ସବୁ ଶକ୍ତି କେନ୍ଦ୍ରୀଭୂତ ହୋଇଯାଏ ଏବଂ କ୍ଷମତାର ଅତ୍ୟାଧିକ କେନ୍ଦ୍ରୀକରଣ ମାରାତ୍ମକ ଅଟେ । ଆହୁରି ମଧ୍ୟ ରାଷ୍ଟ୍ରୀକରଣ କରା ଯାଇଥିବା ଶିଳ୍ପ ଗୁଡ଼ିକୁ ସରକାରଦ୍ୱାରା ଯେପରି ପରିଚାଳିତ କରାଯାଉଛି, ତାହା ଆତ୍ମାସୃଷ୍ଟି କରୁନାହିଁ । ଏଥିରେ ଅତ୍ୟନ୍ତ ଅପାରଗତା ଓ ଅସାବଧାନତା ଦେଖାଯାଉଛି । ଲୋକଙ୍କ ହାତରେ ଖାଉଟି ଓ ନିତ୍ୟ ବ୍ୟବହାର୍ଯ୍ୟ ଦ୍ରବ୍ୟସବୁର ଉତ୍ପାଦନ ଓ ବଣ୍ଟନ ଆଦି ରହିବା ହିଁ ଏଥିରେ ଏକମାତ୍ର ପ୍ରତିକାରର ପନ୍ଥା । ଖଦି ଓ ଗ୍ରାମୋଦ୍ୟୋଗର ମହତ୍ତ୍ୱ ଏଇଠି ରହିଛି । ଗ୍ରାମସଭା କିମ୍ବା ସମବାୟ ସଂଗଠନ ଜରିଆରେ ଗାଁ ଓ ସହରର ଲୋକେ ସେମାନଙ୍କର ବିକାକଣା ଏବଂ ଉତ୍ପାଦନକୁ ସଂଗଠିତ କରି ପାରନ୍ତି । ଏହାର ଉପର ସ୍ତରରେ ସମବାୟ ସମିତିମାନଙ୍କର ସଂଘ, ୟୁନିୟନ, ଫେଡ଼େରେଶନ ପ୍ରଭୃତି ପ୍ରତିଷ୍ଠାନ ରହିବ । ଏହି ଅବସ୍ଥା ଫଳରେ ଅର୍ଥନୀତିର ପ୍ରକୃତ ନିୟନ୍ତ୍ରଣ ଲୋକଙ୍କ ହାତରେ ରହିବ । ଏହି ଜନ ଅନୁଷ୍ଠାନମାନେ ଯେଉଁ ନୀତି ନିୟମମାନ ଧାର୍ଯ୍ୟ କରିବେ ସେହି ବ୍ୟବସ୍ଥା ମାନି ଚଳିବାକୁ ବ୍ୟକ୍ତିଗତ ବ୍ୟବସାୟୀ ଓ ବ୍ୟକ୍ତିଗତ ଶିଳ୍ପ ମାଲିକମାନେ ବାଧ୍ୟ ହେବେ । ପୁଞ୍ଜିବାଦୀ ଶୋଷଣକୁ ଲୋପ କରିବାର ଏହାହିଁ ପ୍ରକୃତରେ ସଫଳ ପନ୍ଥା ଅଟେ । ବିନୋବାଜୀଙ୍କ କଥାରେ ଆମେ ତ

କହିବୁ ଯେ ସାମ୍ୟବାଦୀ ଓ ସମାଜବାଦୀମାନେ ପୁଞ୍ଜିବାଦକୁ ଲୋପ କରିବାକୁ ଚାହାନ୍ତି ସତ ମାତ୍ର ପୁଞ୍ଜିବାଦୀମାନେ ଯେଉଁ ବସ୍ତୁ ସବୁର ଉତ୍ପାଦନ କରନ୍ତି, ସେହି ସବୁ ବସ୍ତୁର ପୃଷ୍ଠପୋଷକତା ଦ୍ୱାରା ସେମାନେ ପୁଞ୍ଜିବାଦୀଙ୍କୁ ପ୍ରକାରାନ୍ତରେ ପୋଷଣ କରୁଛନ୍ତି । ଖଦୀ ଓ ଗ୍ରାମୋଦ୍ୟୋଗ ପୁଞ୍ଜିବାଦର ମୂଳୋତ୍ପାଟନ କରିବାକୁ ଚାହେଁ ।

ଆଧୁନିକ ଯୁଗରେ ଲୋକେ ବଡ଼ ବଡ଼ ସହରମାନଙ୍କରେ ଯାଇ ରହୁଛନ୍ତି । କେତେକ ପାଶ୍ଚାତ୍ୟ ଦେଶରେ ଶତକରା ୮୫ରୁ ୯୦ ପର୍ଯ୍ୟନ୍ତ ଲୋକ ସହରମାନଙ୍କରେ ରହନ୍ତି । ଏହି ସହର ସବୁରେ ବହୁ ନୂଆ ନୂଆ ଜଟିଳ ସମାସ୍ୟା ମଥା ଟେକୁଛି । ଅପରାଧ, ଅନୀତି, ଦୁର୍ନୀତି ଆଦି ନଗରମାନଙ୍କରେ ପରିପୁଷ୍ଟ ହେଉଛି । ସ୍ୱାସ୍ଥ୍ୟରକ୍ଷା, ସଫେଇ ଯୋଗାଣ ବ୍ୟବସ୍ଥା ପ୍ରଭୃତିରେ ଗୁରୁତର ସମସ୍ୟା ହୋଇ ଦେଖା ଦେଉଛି । ଅତ୍ୟଧିକ ଲୋକ ଗହଳି ହେତୁ ଅସ୍ୱାସ୍ଥ୍ୟ ଦେଖା ଦେଉଛି । ଲୋକେ ମୁକ୍ତବାୟୁ ଓ ସୂର୍ଯ୍ୟାଲୋକରୁ ବଞ୍ଚିତ ହେଉଛନ୍ତି । ଏପରିକି ଆଜକାଲି ସହର-ମାନଙ୍କରେ ଯାନବାହାନ ବ୍ୟବସ୍ଥା ସୁଦ୍ଧା ଏକ ସାଂଘାତିକ ସମସ୍ୟା ହୋଇ ପଡ଼ୁଛି ।

ପକ୍ଷାନ୍ତରେ ଗ୍ରାମଜୀବନର ବହୁ ସୁବିଧା ରହିଛି । ସେଠାରେ ପ୍ରତ୍ୟେକ ବ୍ୟକ୍ତି ପ୍ରତ୍ୟେକଙ୍କୁ ଜାଣନ୍ତି ଓ ଏଣୁ ପରସ୍ପରକୁ ସାହାଯ୍ୟ କରିବା ମନୋଭାବ ସହଜରେ ବୃଦ୍ଧିପାଏ । ପ୍ରଚୁର ଖୋଲା ଜାଗା, ମୁକ୍ତବାୟୁ ଓ ସୂର୍ଯ୍ୟାଲୋକ ଗ୍ରାମରେ ରହିଛି । ଅପରାଧ ଓ ଅନୈତିକତା ସେଠି ବିଶେଷ ସମସ୍ୟା ସୃଷ୍ଟି କରେ ନାହିଁ । ମାତ୍ର ଗାଁର ଅସ୍ୱାସ୍ଥ୍ୟ, ଅପରିଚ୍ଛନ୍ନତା, ଦାରିଦ୍ର୍ୟ, ବେକାରି ଓ

ବିଚ୍ଛିନ୍ନ ହେତୁରୁ ଉଦ୍‌ଯୋଗୀ ଲୋକେ ଗାଁ ଛାଡ଼ି ଚାଲିଯାଇ ସହରମାନଙ୍କରେ ଭାଗ୍ୟ ପରୀକ୍ଷା କରିଥାନ୍ତି ।

ଗ୍ରାମଜୀବନକୁ ଏହିରୂପେ ଭାଙ୍ଗିଯିବାକୁ ନ ଦେଇ ଗ୍ରାମମାନଙ୍କୁ ଶକ୍ତିଶାଳୀ ଓ ପୁନରୁଜ୍ଜୀବିତ କରି ଗଢ଼ିବାହିଁ ସର୍ବୋଦୟର ଆଦର୍ଶ । ସହରମାନଙ୍କରେ କେତେକ ସୁବିଧା ସୁଯୋଗ ଓ ଜୀବନକୁ ଉପଭୋଗ କରିବାର ସାମଗ୍ରୀ ଥିବାରୁ ଲୋକେ ସହର ଆଡ଼କୁ ଆକୃଷ୍ଟ ହେଉଛନ୍ତି । ଗାଁମାନଙ୍କରେ ବି ଏହି ସୁବିଧା ସୁଯୋଗ ସବୁର ବ୍ୟବସ୍ଥା ଆଜିକାଲି ଯୁଗରେ କରାଯାଇପାରେ ଏବଂ କରାଯିବା ଉଚିତ ମଧ୍ୟ । ଗାଁଗୁଡ଼ିକୁ ପରିଷ୍କାର ପରିଚ୍ଛନ୍ନ ରଖାଯାଇ ପାରେ । ସେଠାରେ ଖୁବ ଭଲଧରଣର ସ୍କୁଲ ଡାକ୍ତରଖାନା ଓ ପୁସ୍ତକାଳୟ ମାନ ପ୍ରତିଷ୍ଠା କରାଯାଇପାରେ । ଭଲ ରାସ୍ତାଘାଟର ନିର୍ମାଣଦ୍ୱାରା ବାହାର ଜଗତରୁ ବିଚ୍ଛିନ୍ନ ହୋଇ ରହିବାର ଅବକାଶ ଗାଁ-ମାନଙ୍କ ପକ୍ଷେ ଆଉ ରହିବ ନାହିଁ । ଟେଲିଫୋନ୍ ଓ ରେଡ଼ିଓ ସାହାଯ୍ୟରେ ବାହାର ସାଙ୍ଗରେ ସମ୍ପର୍କ ରଖିବା ଗ୍ରାମମାନଙ୍କ ପକ୍ଷେ ବର୍ତ୍ତମାନ ସମ୍ଭବ ।

ଆଧୁନିକ ନଗରମାନଙ୍କର ଐଶ୍ୱର୍ଯ୍ୟ ବଡ଼ ବଡ଼ ଶିଳ୍ପ ସମ୍ଭାର ଉପରେ ପ୍ରତିଷ୍ଠିତ । ନୂଆ ନୂଆ ଶିଳ୍ପର ବିକାଶ ସାଧାରଣତଃ ସହରମାନଙ୍କରେ ହୋଇଥାଏ । ଏଣୁ ସହରମାନଙ୍କର ଆକାର କ୍ରମେ କ୍ରମେ ବଢ଼ି ଚାଲେ । ସର୍ବୋଦୟ ଆନ୍ଦୋଳନ ଗାଁମାନଙ୍କରେ ଶିଳ୍ପର ବିକାଶ ଘଟାଇବାକୁ ଚାହେଁ । ନାନା ଶିଳ୍ପ ଓ ଧନ୍ଦା ସବୁ ଗଢ଼ିଉଠିବା ଦ୍ୱାରା ଗାଁମାନେ ବି ସମୃଦ୍ଧିଶାଳୀ ହେବ । କୁଟୀର ଶିଳ୍ପମାନଙ୍କ ପରି ଶ୍ରେଷ୍ଠ ଶ୍ରେଷ୍ଠ ଗ୍ରାମଶିଳ୍ପ ବି ଉତ୍ପାଦନ-କ୍ଷମ ହୋଇପାରେ । ବର୍ତ୍ତମାନ ଗାଁମାନଙ୍କୁ ବିଦ୍ୟୁତ ଶକ୍ତି ଯୋଗାଇ

ବିଆଯାଉଛି ଏବଂ ଆମେ ବୁଝୁଁ ଯେ ଏ ଦେଶର ପ୍ରତ୍ୟେକ ଗାଁରେ ଯେତେ ସମ୍ଭବ ବିଦ୍ୟୁତ ଶକ୍ତି ଦିଅନ୍ତୁ । ଗ୍ରାମ ଶିଳ୍ପର କେତେକ ପ୍ରକ୍ରିୟାରେ ଏହି ବିଦ୍ୟୁତ ଶକ୍ତିର ଉପଯୋଗ କରାଯାଇପାରେ ଯାହା ଫଳରେ ଗଧ ଖଟଣି ବହୁ ପରିମାଣରେ କମିଯିବ ଏବଂ ଉତ୍ପାଦନ ବଢ଼ିବ । ବୈଜ୍ଞାନିକ ଗବେଷଣା ଓ ପ୍ରୟୋଗ ଦ୍ୱାରା ଅଧିକ ଉତ୍ପାଦନ କ୍ଷମ ଶ୍ରେଷ୍ଠ ଶ୍ରେଷ୍ଠ ଯନ୍ତ୍ରପାତି ଓ ଉପକରଣ-ମାନଙ୍କର ବ ବିକାଶ ଘଟାଯାଇ ପାରିବ । ଏବଂ ଗ୍ରାମମାନଙ୍କରେ ଏ ସବୁର ବିନିଯୋଗ କରାଯାଇ ପାରିବ । ଏହି ସବୁ ଗ୍ରାମ୍ୟଶିଳ୍ପର ବିକାଶ ଫଳରେ ଯେପରି ବେକାରି ବୈଷମ୍ୟ ଓ ଶୋଷଣ ନ ଘଟେ ସେ ବିଷୟରେ ଗ୍ରାମ ଓ ପ୍ରଖଣ୍ଡ ବା ବ୍ଲକ ସ୍ତରର ଯୋଜନା ଦୃଢ଼ ବ୍ୟବସ୍ଥା କରିବ ।

ଗ୍ରାମମାନଙ୍କରେ ମନୋହର ପରିବେଷ୍ଟନୀ ମଧ୍ୟରେ ଲୋକେ ସେମାନଙ୍କ ଘରେ ବା ଘରର ନିକଟରେ କାମ କରିବେ । ସେମାନେ କାମରୁ ଅଧିକତର ଆନନ୍ଦ ପାଇବେ ଏବଂ ସହଜରେ କ୍ଳାନ୍ତି ଅପନୋଦନ କରି ପାରିବେ । ସହରର ଲୋକଙ୍କୁ ଯେଉଁ ପ୍ରକାରର ଉଦ୍‌ବେଗ ଓ ଉତ୍ତେଜନା ଗ୍ରାସ କରିଥାଏ, ଗ୍ରାମଲୋକ ତହିଁରୁ ମୁକ୍ତ ରହିବେ । ଏଣୁ ଘର ଓ ବାହାର ଜଗତ ସହିତ ଶାନ୍ତିରେ ଚଳିବାରେ ଏହି ଉଦ୍‌ବେଗ ଶୂନ୍ୟତା ଓ ଅନୁତ୍ତେଜନା ଏକ ବଡ଼ ଉପାଦାନ ହେବ ।

ଏହିରୂପେ କୃଷି ଓ ଅଧିକାଂଶ ଶିଳ୍ପଧନ୍ଦା ଗ୍ରାମରେ ହିଁ ରହିବ ଓ କେବଳ କେତେକ ବୃହତ୍ ଶିଳ୍ପ ସହରରେ ରହିବ । ଇସ୍ପାତଶିଳ୍ପ, ରେଳଇଂଜିନ ଓ ମଟରଗାଡ଼ି ଶିଳ୍ପ, ଜାହାଜ ନିର୍ମାଣ

ଶିଳ୍ପ ପ୍ରଭୃତି ଖୁବ ବୃହତ୍ତ୍ର ଥିବାରୁ ସହରମାନଙ୍କରେ ରହିବ । କିନ୍ତୁ ଏ ଗୁଡ଼ିକ ଖୁବ ବେଶୀ ବା ଖୁବ ବଡ଼ ହେବ ନାହିଁ ।

ଯେଉଁ ପ୍ରକାରର ଅର୍ଥନୀତିରେ ଗ୍ରାମ ଓ ଛୋଟ ଛୋଟ ଗ୍ରାମ୍ୟ-ଶିଳ୍ପ ପ୍ରତି ଗୁରୁତ୍ୱ ଦିଆଯାଏ, ସେହି ପ୍ରକାର ଅର୍ଥନୀତିକୁ ବିକେନ୍ଦ୍ରିତ ଅର୍ଥନୀତି କୁହାଯାଏ । ଯେଉଁ ଶାସନ ପଦ୍ଧତିରେ ଗ୍ରାମସଭାହିଁ ମୂଳ ଭିତ୍ତି ଏବଂ ଯଥାସମ୍ଭବ ଅଧିକରୁ ଅଧିକ ସ୍ୱାୟତ୍ତ ଶାସନ ଉପଭୋଗ କରେ ସେହି ଶାସନ ପଦ୍ଧତି ବିକେନ୍ଦ୍ରିତ ଅଟେ । ବିକେନ୍ଦ୍ରିତ ଅର୍ଥନୀତି ଓ ପଦ୍ଧତି ଏହି ଦୁଇଟି ଏକାଧ ବିକେନ୍ଦ୍ରିତ ସମାଜର ଭିତ୍ତି ଅଟେ । ସେହି ସମାଜହିଁ ବ୍ୟକ୍ତିକୁ ପୂର୍ଣ୍ଣ ବିକାଶର ସୁବିଧା ସୁଯୋଗ ଓ ଯଥା ସମ୍ଭବ ଅଧିକ ସ୍ୱାଧୀନତା ନିଶ୍ଚିତ ଭାବରେ ଯୋଗାଇ ଥାଏ । ଏଣୁ ବିକେନ୍ଦ୍ରିତ ସମାଜ ହିଁ ସର୍ବୋଦୟ ପାଇଁ ଅତ୍ୟାବଶ୍ୟକ ।

ସର୍ବୋଦୟ କେବଳ ଭାରତରେ ସୀମାବଦ୍ଧ ରହିବ ନାହିଁ; ଏହା ଜଗତସାରା ବ୍ୟାପି ହେବ । କାରଣ ଏହା ନିଶ୍ଚିତ ଯେ ଶେଷକୁ ଦିନେ ସାରା ପୃଥିବୀ ଏକହେବ । ବିନୋବାଜୀ ପରିକଳ୍ପନା କରନ୍ତି ଯେ ଗୋଟିଏ ପ୍ରାନ୍ତରେ ଆତ୍ମନିୟନ୍ତ୍ରଣାଧୀନ ଗ୍ରାମ ଓ ସହରଗୁଡ଼ିକ ରହିବ ଏବଂ ଅପର ପ୍ରାନ୍ତରେ ବିଶ୍ୱରାଷ୍ଟ୍ର ରହିବ । ଏହି ଦୁଇଟି ପ୍ରାନ୍ତ ମଧ୍ୟରେ ଯେଉଁ ଦେଶ ଓ ପ୍ରଦେଶ ସବୁ ରହିବ ସେସବୁ କେବଳ ଶାସନଗତ ସୁବିଧା ପାଇଁ ରହିବେ ମାତ୍ର ସେମାନଙ୍କର ଅନ୍ୟପ୍ରକାର ଗୁରୁତ୍ୱ ରହିବ ନାହିଁ । ଜାତି, ଧର୍ମ, ଭାଷା ଓ ରାଜନୀତି ପ୍ରଭୃତିର ଭେଦସବୁକୁ ପୃଥିବୀର ଲୋକେ ଅତିକ୍ରମ କରି ଏକ ବୃହତ କୁଟୁମ୍ବରେ ପରିଣତ ହେବେ ।

ଗ୍ରାମଦାନ, ଓ ଶାନ୍ତିସେନା ପୃଥିବୀ ପାଇଁ ଏକ ସୁନ୍ଦର ଭବିଷ୍ୟତର ଭିତ୍ତି ସ୍ଥାପନ କରୁଛି । ଏ ପର୍ଯ୍ୟନ୍ତ ଆମେ ଗ୍ରାମଦାନ ଓ ଖଦୀ ବିଷୟରେ ଆଲୋଚନା କରି ଆସିଛୁଁ । ପରବର୍ତ୍ତୀ ଅଧ୍ୟାୟରେ ତୃତୀୟ ବିଷୟରେ ଅର୍ଥାତ ଶାନ୍ତି ସେନା ବିଷୟରେ ଆଲୋଚନା କରିବୁଁ ।

---

# ନବମ ଅଧ୍ୟାୟ

## ଶାନ୍ତିସେନାର ଆଦର୍ଶ

୧୯୪୮ ଜାନୁଆରୀ ୩୦ ତାରିଖ ଘଟଣା ସଂଧ୍ୟା ୫ଟା ୧୦ମିନିଟରେ ହୋଇଥିଲା । ନୂଆ ଦିଲ୍ଲୀରୁ ବିରଳା ଭବନର ଖୋଲାପଡ଼ିଆରେ ପ୍ରାର୍ଥନା ସଭାକୁ ଗାଂଧୀଜୀ ତରବର ହୋଇ ବାହାରିଥାନ୍ତି । ଗୁରୁତ୍ୱପୂର୍ଣ୍ଣ ରାଷ୍ଟ୍ରୀୟ ସମସ୍ୟାର ଆଲୋଚନାରେ ବ୍ୟାପୃତ ଥିବାରୁ ସେ ଦିନ ପ୍ରାର୍ଥନାସ୍ଥାନକୁ ଯିବାରେ ତାଙ୍କର ବିଳମ୍ବ ଘଟିଥାଏ । ଏଣୁ ସେ ଦ୍ରୁତ ପଦରେ ଚାଲିଥାନ୍ତି ।

ସେ ପ୍ରାର୍ଥନା ସ୍ଥାନରେ ପହଞ୍ଚି ଗଲେଣି ଏତିକିବେଳେ ତିନୋଟି ଗୁଳି ଫାଏର ହେଲା ଏବଂ ଗାଂଧୀଜୀ ଭୂଇଁରେ ଢଳିପଡ଼ିଲେ, ଘାତକ ପ୍ରତି ତିରସ୍କାର ପୂର୍ଣ୍ଣ ଶବ୍ଦ କିମ୍ବା ଯନ୍ତ୍ରଣାର ଚିତ୍କାର ତାଙ୍କର ମୁଁହରୁ ବାହାରି ନଥିଲା । ତାଙ୍କର ଓଷ୍ଠାଧରରୁ କେବଳ ଏହି ଯୋଡ଼ିଏ ମାତ୍ର ପଦ ବାହାରି ପଡ଼ିଲା "ହେ ରାମ" ।

ତୀବ୍ର ଆବେଗର ସହିତ ପରେ ବିନୋବାଜୀ ମନ୍ତବ୍ୟ ଦେଇ-ଥିଲେ ଯେ ଗାଂଧୀଜୀ ସର୍ବ ପ୍ରଥମ ଶାନ୍ତିସୈନିକ ଯେ ନିଜର କର୍ତ୍ତବ୍ୟ ପାଳନ କରୁ କରୁ ଜୀବନ ବଳିଦେଲେ । ସେ ଶାନ୍ତିସେନାର ସେନାପତି ଭାବରେ ଆଦେଶ ଦେଲେ ଏବଂ ଏହି ଆଦେଶକୁ ଶାନ୍ତିସୈନିକ ଭାବରେ ପାଳନ କଲେ ।

ଶାନ୍ତିପୂର୍ଣ୍ଣ ଉପାୟରେ ହିଂସାପୂର୍ଣ୍ଣ ବିଶୃଙ୍ଖଳାର ନିବାରଣ କରିବା ଏବଂ ଉତ୍ତେଜନା ଓ ସଂଘର୍ଷର ସମାଧାନରେ ଏହି ଶାନ୍ତିସେନା ଆତ୍ମୋତ୍ସର୍ଗ କରିଥିବା ଏକ ଶାନ୍ତିସେନାର ପରିକଳ୍ପନା ଗାଂଧୀଜୀ ବହୁବର୍ଷ ପୂର୍ବରୁ କରିଥିଲେ । ସେ ଲେଖିଥିଲେ :

"କେତେକାଳ ପୂର୍ବେ ମୁଁ ଏକ ଶାନ୍ତିସେନାର ସୂଚନା ଦେଇଥିଲି । ଏହି ଶାନ୍ତିସେନାର ସୈନିକମାନେ ଦଙ୍ଗା ହେଙ୍ଗାମ ବିଶେଷ କରି ସାମ୍ପ୍ରଦାୟିକ ହଣାକଟା ନିବାରଣ କରିବାରେ ନିଜ ନିଜର ଜୀବନକୁ ଉତ୍ସର୍ଗ କରିବେ । ପୋଲିସ ବା ସମସ୍ତ ସେନା ବଦଳରେ ଏହି ଶାନ୍ତିସେନା କାମ କରିବ ବୋଲି ମୋର ପରିକଳ୍ପନା । ଏହା ଏକ ଅତି ଉଚ୍ଚାଭିଳାସ ବୋଲି ଜଣା ଯାଉଛି । ଏହା ବାସ୍ତବ କ୍ଷେତ୍ରରେ କାର୍ଯ୍ୟକାରୀ ହେବାଟା ମଧ୍ୟ ଅସମ୍ଭବ ବୋଲି ଜଣାଯାଇ ପାରେ । କିନ୍ତୁ କଂଗ୍ରେସ ଯଦି ଅହିଂସକ ଆନ୍ଦୋଳନରେ ସଫଳ ହେବାକୁ ଇଚ୍ଛା କରୁଥାଏ ତେବେ ହିଂସା ମୂଳକ ପରିସ୍ଥିତିକ ଅହିଂସକ ଉପାୟରେ ସମାଧାନ କରିବାର ଶକ୍ତି ଯେ କଂଗ୍ରେସର ରହିଛି ଏହା ତାକୁ ଅବଶ୍ୟ ପ୍ରମାଣ କରି ଦେଖାଇବାକୁ ପଡ଼ିବ ।"

ସ୍ୱାଧୀନତା ପୂର୍ବରୁ ଭାରତରେ ଯେତେବେଳେ ଭୟଙ୍କର ସାମ୍ପ୍ରଦାୟିକ ହଣାକଟା ଆରମ୍ଭ ହୋଇଗଲା ଏବଂ ଦେଶ ବିଭାଜନ ପରେ ଯେତେବେଳେ ଏହା ତୀବ୍ରତର ହେବାକୁ ଲାଗିଲା, ସେତେବେଳେ ଗାନ୍ଧୀଜୀ ଏହି ସାମ୍ପ୍ରଦାୟିକ ଉତ୍ତେଜନା ନିବାରଣ ଉଦ୍ୟମରେ ଲାଗିପଡିଲେ ଏବଂ ଏହି ଉଦ୍ୟମରେହିଁ ନିଜର ଜୀବନ ବଳି ଦେଲେ ।

ଗାନ୍ଧୀଜୀଙ୍କର ଏହି ଆତ୍ମୋତ୍ସର୍ଗ ଏହି ଭୟଙ୍କର ଭ୍ରାତୃ ବିବାଦର ବିରାମ ଘଟାଇଲା ସତ ମାତ୍ର ତଥାପି ଅନେକ ପ୍ରକାରର ହିଂସାତ୍ମକ ଅଶାନ୍ତିର ବ୍ୟାଧି ଏ ପର୍ଯ୍ୟନ୍ତ ଭାରତରେ ଲାଗି ରହିଛି । ଜାତି, ଧର୍ମ ଓ ଭାଷା ନେଇ ବିବାଦମାନ ବରାବର ଘଟୁଛି । ଶ୍ରମିକ ଓ ଛାତ୍ର ଆନ୍ଦୋଳନରୁ ହିଂସାକାଣ୍ଡ ଉପୁଜୁଛି ।

ସରକାରୀ ନୀତି ଓ କାର୍ଯ୍ୟକଳାପ ବିରୋଧରେ କ୍ରୋଧ ଓ ଉତ୍ତେଜନା ଫଳରେ ମଧ୍ୟ ଧ୍ୱଂସାକାଣ୍ଡ ଘଟୁଛି ।

ଏହି ସବୁ ଉତ୍ତେଜନାର ନିବାରଣ ପାଇଁ ପୋଲିସକୁ ବ୍ୟବହାର କରାଯାଇଥାଏ । ବେଳେବେଳେ ପୋଲିସକୁ ସାହାଯ୍ୟ କରିବାକୁ ସେନାବାହିନୀକୁ ମଧ୍ୟ ଡକରା ହୋଇଥାଏ । ଦଙ୍ଗା ହେଙ୍ଗାମ ଓ ପୋଲିସର କାର୍ଯ୍ୟାନୁଷ୍ଠାନ ହେତୁରୁ ବହୁ ଜୀବନ ନଷ୍ଟ ହୋଇଥାଏ । ଧନସମ୍ପଦର କ୍ଷତି ବି ବହୁତ ହୋଇଥାଏ । ଏହି ଆଭ୍ୟନ୍ତରୀଣ ଗଣ୍ଡଗୋଳ ଦେଶକୁ ଦୁର୍ବଳ କରି ଦେଉଛି ଓ ତାର ନିରାପତ୍ତାକୁ ବିପଦଗ୍ରସ୍ତ କରୁଛି । ଦେଶର ଏକତା ପ୍ରତି ମଧ୍ୟ ଏହା ବିପଦର କାରଣ ହେଉଛି । ପୋଲିସ ପିଛା ବଢ଼ିଚାଲିଥିବା ବ୍ୟୟରେ ଦେଶର ସମ୍ପଦ କ୍ଷୟ ହେଉଛି । ଦେଶର ନାଗରିକଙ୍କ ବିରୋଧରେ ଦେଶର ସେନାବାହିନୀର ବ୍ୟବହାରଟା ମଧ୍ୟ ବଡ଼ ଶୋଚନାର ବିଷୟ ।

ଲୋକଙ୍କୁ ଶୃଙ୍ଖଳିତ କରି ରଖିବାକୁ ପୋଲିସ ଓ ସେନା-ବାହିନୀକୁ ଯେ ବାରମ୍ବାର ବ୍ୟବହାର କରାଯାଉଛି । ଏତଦ୍ୱାରା ପୋଲିସ ଓ ସେନାର ପ୍ରଭାବ ଓ କ୍ଷମତା ବଢ଼ିବଢ଼ି ଯାଉଛି । ଫଳରେ ଏହା ଗଣତନ୍ତ୍ରର ମୂଳଭିତ୍ତିକୁ ଧୀରେ ଧୀରେ ଏବଂ ନିଶ୍ଚିତ ଭାବରେ ଦୁର୍ବଳକରି ତାହାର ଅସ୍ତିତ୍ୱକୁ ବିପଦଗ୍ରସ୍ତ କରୁଛି ।

ଏଣୁ ବାଦ ବିସମ୍ବାଦ ସବୁର ସମାଧାନ ପାଇଁ ଶାନ୍ତିପୂର୍ଣ୍ଣ ଉପାୟ ଅବଲମ୍ବନ କରିବାଟା ଆମ ଦେଶ ପକ୍ଷରେ ଅତ୍ୟାବଶ୍ୟକ ହୋଇ ପଡ଼ୁଛି । ଜନସାଧାରଣ ଏହି ଶାନ୍ତିପୂର୍ଣ୍ଣ ପନ୍ଥାରେ ଅଭ୍ୟସ୍ତ ହେବା ପର୍ଯ୍ୟନ୍ତ ଏହିଭଳି ଶାନ୍ତିପୂର୍ଣ୍ଣର ସମାଧାନର ଉଦ୍ୟମରେ

ଜୀବନ ଉତ୍ସର୍ଗ କରିଥିବା ଏକ କର୍ମୀଦଳ ଏ ଦେଶରେ ଆବଶ୍ୟକ ।

ଗଣ୍ଡଗୋଳ ଓ ଅଶାନ୍ତିର କାରଣ ସବୁ ଖୋଜି ବସିଲେ ତ ବହୁତ ମିଳିବ, ମାତ୍ର ଗୋଟିଏ ଶ୍ରେଣୀର କାରଣ ଆମର ଦୃଷ୍ଟି ଆକର୍ଷଣ କରିବ । ଯେଉଁ ଦୁଇଟିର କି ବିଶେଷ ଗୁରୁତ୍ୱ ରହିଛି । ବିଭିନ୍ନ ଜାତି, ବିଭିନ୍ନ ଭାଷାଭାଷୀ ଓ ବିଭିନ୍ନ ଧର୍ମ ସମ୍ପ୍ରଦାୟ ମଧ୍ୟରେ ବଦ୍ଧମୂଳ ସନ୍ଦେହ ଓ ଶତ୍ରୁତାହିଁ କେତେକ ପ୍ରକାରର ସଂଘର୍ଷ ଓ ଦଙ୍ଗା ହେଙ୍ଗାମର ମୂଳ କାରଣ । ଅତୀତ ଇତିହାସରେ ଏପରି ଅନେକ ଘଟଣା ଘଟି ଯାଇଛି । ଯାହା ଫଳରେ କି ଏହିସବୁ ଶତ୍ରୁତା ଓ ସନ୍ଦେହର ସୃଷ୍ଟି ହୋଇଥିଲା । ମାତ୍ର ବର୍ତ୍ତମାନ ଯୁଗରେ ଏ ସବୁର କୌଣସି ପ୍ରକାର ପ୍ରାସଂଗୀକତା ନାହିଁ ।

ସାଇପ୍ରସ ଦ୍ୱୀପପୁଞ୍ଜର ଗ୍ରୀକ ଓ ତୁରସ୍କ ଜାତିଦ୍ୱୟ କିମ୍ବା ମଧ୍ୟ ପ୍ରାଚ୍ୟର ଆରବ ଓ ଇହୁଦୀ ଜାତିଦ୍ୱୟ ଯେତେବେଳେ ପରସ୍ପର ପ୍ରତି ଶତ୍ରୁତା କରୁଛନ୍ତି, ତଦ୍ୱାରା ସେମାନଙ୍କ ଶକ୍ତିର ମସ୍ତବଡ଼ ଅପଚୟ ଘଟୁଛି । ଏହି ବିବାଦ ସେମାନଙ୍କୁ ଉଭୟଙ୍କ ନିମନ୍ତେ ଆବଶ୍ୟକ ଓ କଲ୍ୟାଣକାରୀ ସାମାଜିକ ଓ ଅର୍ଥନୈତିକ ଉନ୍ନୟନ ନିମନ୍ତେ ମିଳିମିଶି ଓ କାର୍ଯ୍ୟକରିବାରେ ବାଧା ଦେଉଛି ଏବଂ ଆଧୁନିକ ବିଜ୍ଞାନଦ୍ୱାରା ସମଗ୍ର ମାନବଜାତିର ମଙ୍ଗଳ ବିଧାନରେ ଯେଉଁ ଉଜ୍ଜ୍ୱଳ ସମ୍ଭାବନା ସୃଷ୍ଟି ହୋଇଛି ତାହାର ସୁବିଧା ସୁଯୋଗ ନେବାରେ ସେମାନଙ୍କୁ ବଞ୍ଚିତ କରୁଛି । ସଂକୀର୍ଣ୍ଣ ଜାତିଆଣ ଓ ସାମ୍ପ୍ରଦାୟିକ ମନୋଭାବ ହେତୁରୁ ଭାରତର ଯେଉଁ ସଂଘର୍ଷ ବିବାଦ ସବୁ ହେଉଛି, ସେ ସବୁର କାରଣ ମଧ୍ୟ ଏହି ପ୍ରକାରର ।

ଅନ୍ୟଧରଣର ସଂଘର୍ଷଗୁଡ଼ିକ ଅନ୍ୟ କେତେକ କାରଣରୁ ଘଟୁଛି । ଆମ ଦେଶର ସାମାଜିକ ଓ ଅର୍ଥନୈତିକ ପଦ୍ଧତିରେ ବହୁ ଅନ୍ୟାୟ ରହିଯାଇଛି । କେତେକ ଲୋକ ବହୁ ଭୂମିର ଅଧିକାରୀ, ଅଥଚ ଅନ୍ୟମାନେ ଏକାବେଳେକେ ଭୂମିହୀନ । ଯେଉଁ ଯନ୍ତ୍ରପାତି ବା ସାଧନସାମଗ୍ରୀ ଉପରେ ହଜାର ହଜାର ଲୋକଙ୍କ ଜୀବିକା ଓ କର୍ମସଂସ୍ଥା ନିର୍ଭର କରେ ସେ ସବୁକୁ ଅନ୍ୟ ଅଳ୍ପ କେତେକ ଲୋକ ନିୟନ୍ତ୍ରିତ କରୁଛନ୍ତି ଅଥଚ ଅନ୍ୟ ବହୁ ଲୋକଙ୍କର କୌଣସି ଜୀବିକା ନାହିଁ । କେତେକ ନିଜକୁ ଅନ୍ୟମାନଙ୍କଠାରୁ ବଡ଼ ଭାବୁଛନ୍ତି ଓ ଅନ୍ୟମାନଙ୍କ ସହିତ ସମାନତାପୂର୍ଣ୍ଣ ବ୍ୟବହାର କରିବାକୁ ନାରାଜ । ପୁନଶ୍ଚ ଅର୍ଥନୈତିକ ଦୁର୍ନୀତି ବଢ଼ୁଥିବା ହେତୁ ଖାଦ୍ୟାଭାବ ଓ ମୂଲ୍ୟବୃଦ୍ଧି ପ୍ରଭୃତି ସମସ୍ୟା ଦେଖାଯାଉଛି । ଏହିପରି ସବୁ କାରଣରୁ ବହୁ ଲୋକଙ୍କର ଦୁଃଖ ନିର୍ଯ୍ୟାତନା ଘଟୁଛି ।

ଲୋକେ ଯେତେବେଳେ ଅନ୍ୟାୟ ଓ ବୈଷମ୍ୟ ବା ଦୁଃଖ ନିର୍ଯ୍ୟାତନା ଆଉ ସହି ପାରନ୍ତି ନାହିଁ, ସେମାନେ ବିଦ୍ରୋହୀ ହୋଇ ଉଠନ୍ତି । ଅନେକ ସମୟରେ ଏହି ସବୁ ଅନ୍ୟାୟ ନିର୍ଯ୍ୟାତନା ବିରୁଦ୍ଧରେ କିପରି ଶାନ୍ତିପୂର୍ଣ୍ଣ ସଂଗ୍ରାମ କରିବାକୁ ହେବ ତାହା ସେମାନେ ଜାଣି ପାରନ୍ତି ନାହିଁ କିମ୍ବା ଶାନ୍ତିପୂର୍ଣ୍ଣ ସଂଗ୍ରାମ ପାଇଁ ସେମାନଙ୍କର ଧୈର୍ଯ୍ୟ ବି ନଥାଏ । ଫଳରେ ହିଂସାକାଣ୍ଡମାନ ଘଟି ଯାଏ ।

ଆଜି ଜଗତର ଏହିଭଳି ହିଂସା କାଣ୍ଡମାନ ଜଗତବ୍ୟାପି ହେଉଛି । ପୃଥିବୀର ବହୁଦେଶର ସାମାଜିକ ଓ ଅର୍ଥନୈତିକ ଧାରା ନ୍ୟାୟାନୁମୋଦିତ ନୁହେଁ । ଫଳରେ ଦୁନିଆର କୋଟି କୋଟି ଲୋକ ଭୋକ ଉପାସରେ ପଡ଼ିଛନ୍ତି । ଅଥଚ ସମଗ୍ର ମନୁଷ୍ୟ

ଜାତିର ମଙ୍ଗଳ ପାଇଁ ବିରାଟ ସମ୍ଭାବନାର ପଥ ଆଧୁନିକ ବିଜ୍ଞାନ ଖୋଲି ଦେଇଛି । ଏହି ସବୁ ଅନ୍ୟାୟପୂର୍ଣ୍ଣ ଓ ଯୁଗର ସମ୍ପୂର୍ଣ୍ଣ ଅନୁପଯୋଗୀ ଅର୍ଥନୈତିକ ଓ ସାମାଜିକ ବ୍ୟବସ୍ଥାମାନ ନ ବଦଳିବା ଯାଏ ବିଜ୍ଞାନ ଜନ ସାଧାରଣଙ୍କ ହିତରେ ବ୍ୟବହୃତ ହୋଇ ପାରିବ ନାହିଁ ।

ଏଣୁ ଅନେକ ଲୋକ ଗଭୀର ଭାବେ ଅନୁଭବ କରନ୍ତି, ଯେ ଏହିସବୁ ଅନ୍ୟାୟପୂର୍ଣ୍ଣ ପଦ୍ଧତିକୁ ଲୋପ କରିବା ନିମନ୍ତେ ସମଗ୍ର ପୃଥିବୀରେ ବିପ୍ଳବ ଆବଶ୍ୟକ । ସେମାନଙ୍କର ବିଶ୍ୱାସ ଯେ ଏହିସବୁ ବିପ୍ଳବ ନିଶ୍ଚୟ ହିଂସାତ୍ମକ ହେବ । ପୃଥିବୀସାରା ବିପ୍ଳବ ହେବା ଫଳରେ ଯଦି ବିଶ୍ୱଯୁଦ୍ଧ ଘଟିଯାଏ ସେଥିରେ ସେମାନେ ପରବାୟ କରନ୍ତିନାହିଁ ।

ଅତୀତରେ ହିଂସାତ୍ମକ ସାମାଜିକ ବିପବ ଘଟିଛି ଓ ସେସବୁ ବିଶ୍ୱଯୁଦ୍ଧ ଘଟାଇ ନାହିଁ । କିନ୍ତୁ ପୃଥିବୀର ବର୍ତ୍ତମାନ ପରିସ୍ଥିତିରେ ଯେ କୌଣସି ସ୍ଥାନରେ ହିଂସାତ୍ମକ ସଂଘର୍ଷ ଘଟିଗଲେ ତହିଁରୁ ବିଶ୍ୱଯୁଦ୍ଧ ଘଟିଯିବାର ଆଶଙ୍କା ରହିଛି । ତୃତୀୟ ବିଶ୍ୱଯୁଦ୍ଧ ଘଟିଲେ ଆଣବିକ ଓ ଉଦଜାନ ବୋମାଦିଙ୍କର ବ୍ୟବହାର ନିଶ୍ଚିତ ସମ୍ଭାବନା ରହିଛି ଏବଂ ଏହାର ଫଳରେ ମାନବିକ ସଭ୍ୟତାର ଧ୍ୱଂସ ଘଟିପାରେ ।

ଏଣୁ ଅନ୍ୟ କେତେକ ଲୋକ ଯୁଦ୍ଧ ଓ ସଂଘର୍ଷକୁ ବଡ଼ ସଶଂକ ଦୃଷ୍ଟିରେ ଦେଖନ୍ତି ଓ ଶାନ୍ତିକୁ ପ୍ରଥମ ସ୍ଥାନ ଦେଉଛନ୍ତି । ଯେ କୌଣସି ମତରେ ଶାନ୍ତି ରକ୍ଷା କରିଦେବା ଆବଶ୍ୟକ ବୋଲି ସେମାନେ ବିଚାରନ୍ତି । ଶାନ୍ତିରକ୍ଷା ନିମନ୍ତେ ଏପରିକି ବର୍ତ୍ତମାନ ପରିସ୍ଥିତି ଯେପରି ଅଛି ସେହିପରି ରହିବାରେ, ଯେପରିହିପରି

ଅନ୍ୟାୟ ଓ ନିର୍ଯ୍ୟାତନା ଚାଲୁ ରହିବାରେ ମଧ୍ୟ ସେମାନଙ୍କର ଆପତ୍ତି ନାହିଁ ।

ଏହି ସମସ୍ୟା ପୃଥିବୀକୁ ଏକ ଦୋ-ଛକିରେ ପକାଇଛି । ବିପ୍ଳବ କରାଯିବ ନା ଶାନ୍ତି ରକ୍ଷା କରାଯିବ ? କିନ୍ତୁ ପୃଥିବୀ ବର୍ତ୍ତମାନ ଶାନ୍ତି ଓ ବିପ୍ଳବ ଉଭୟ ଲୋଡ଼ୁଛି । ଯଦି ଆମେ ଶାନ୍ତିପୂର୍ଣ୍ଣ ବିପବ ଘଟାଇପାରୁ କିମ୍ବା ବିପ୍ଳବାତ୍ମକ ଶାନ୍ତିର ପରିସ୍ଥିତି ସୃଷ୍ଟି କରିପାରୁ, ତେବେ ଏ ଦ୍ୱନ୍ଦରୁ ମୁକ୍ତି ମିଳିବ । ମାତ୍ର ଏହିପରି ସମାଧାନ ଆମେ କରିପାରିବା କି ? ପୃଥିବୀର ଭବିଷ୍ୟତ ଏହି ପ୍ରଶ୍ନର ଉତ୍ତର ଉପରେ ନିର୍ଭର କରେ ।

ବିନୋବାଜୀ ୧୯୫୧ରେ ଏହି ପ୍ରଶ୍ନର ଉତ୍ତର ଖୋଜିବା ପାଇଁ ଅଶାନ୍ତି କବଳିତ ତେଲେଙ୍ଗାନାରେ ବୁଲୁଥିଲେ । ଭୂମି ସମସ୍ୟା ନେଇ ସେଠାରେ ଏକ ହିଂସାତ୍ମକ ସଂଘର୍ଷ ଘଟି ଯାଇଥିଲା । ସେଠାରେ ଅଳ୍ପ ଲୋକ ବହୁତ ଜମିର ମାଲିକ ଥିଲେ, ଅଥଚ ବହୁ ଲୋକ ଭୂମିହୀନ ଥିଲେ । ଶ୍ରୀ ରାମଚନ୍ଦ୍ର ରେଡ୍ଡି ଭୂମିହୀନଙ୍କ ପାଇଁ ସ୍ୱେଚ୍ଛାରେ ଯେତେବେଳେ ଶହେ ଏକର ଭୂମି ଦାନ କରିବାର ପ୍ରତିଶ୍ରୁତି ଦେଲେ ସେତିକିବେଳେ ବିନୋବାଜୀଙ୍କୁ ଭୂମି ସମସ୍ୟାର ଶାନ୍ତିପୂର୍ଣ୍ଣ ସମାଧାନରୂପେ ଭୂମିଦାନର ପନ୍ଥା ଦିଶିଗଲା । ଏହିଠାରୁ ଅନ୍ୟାୟ ଭୂମି ପଦ୍ଧତିର ସଂସ୍କାର ପାଇଁ ଭୂଦାନ ଆନ୍ଦୋଳନ ଆରମ୍ଭ ହେଲା ଯାହାକି ଏ ଦେଶରେ ଶାନ୍ତିରକ୍ଷା ପାଇଁ ସବୁଠୁଁ ବଡ଼ ଧରଣର କାର୍ଯ୍ୟକ୍ରମ । ପରବର୍ତ୍ତୀ ସମୟରେ ଏହା ଗ୍ରାମଦାନ ଆନ୍ଦୋଳନରେ ପ୍ରତିଷ୍ଠିତ ହେଲା ।

ଏଣୁ ଶାନ୍ତିସେନାର କର୍ତ୍ତବ୍ୟର ନିମ୍ନୋକ୍ତ ପ୍ରଧାନ ଦିଗଗୁଡ଼ି-ମାନ ରହିଛି ।

୧- ଯେଉଁ ସବୁ ସଂକୀର୍ଣ୍ଣ ବିଶ୍ୱାସ ଓ ଦୃଷ୍ଟିଭଙ୍ଗୀ ସଂଘର୍ଷ ଘଟାଏ, ସେ ସବୁକୁ ଦୂର କରିବାକୁ କାର୍ଯ୍ୟ କରିବା ।

୨- ସମାଜିକ ଅନ୍ୟାୟ ସବୁର ଲୋପ ଏବଂ ଅର୍ଥନୈତିକ ପଦ୍ଧତିର ମୌଳିକ ସଂସ୍କାର ପାଇଁ କାର୍ଯ୍ୟ କରିବା ।

୩- ସାରା ଦେଶରେ ଶାନ୍ତିର ପରିସ୍ଥିତି ଯେପରି ଅଟୁଟ ରହେ, ସେଥିପାଇଁ କାର୍ଯ୍ୟ କରିବା

୪- ହିଂସାମୂଳକ ସଂଘର୍ଷ ଓ ବିବାଦ ସବୁକୁ ଶାନ୍ତିର ବାଟରେ ବନ୍ଦ କରିବାକୁ ଯତ୍ନ କରିବା । ଏଥିପାଇଁ ଦରକାର ପଡ଼ିଲେ ନିଜର ଜୀବନକୁ ବି ବଳି ଦେବା ।

୫- ଏବଂ ଏହିସବୁ କାର୍ଯ୍ୟ କରିଆରେ ଭାରତରେ ଅହିଂସକ ସମାଜ ବ୍ୟବସ୍ଥାର ମୂଳଭିତ୍ତି ସ୍ଥାପନ କରାଇବା ଯାହା କି ପୃଥିବୀ ସାରା ସଦିଚ୍ଛା ଓ ସହଯୋଗ ସ୍ଥାପନ କରିବାରେ ସାହାଯ୍ୟ କରିବ ଏବଂ ଶେଷକୁ ଚିରଦିନ ପାଇଁ ସକଳ ପ୍ରକାରର ଯୁଦ୍ଧର ଅବସାନ ଘଟାଇବ ।

---

## ୧୦ମ ଅଧ୍ୟାୟ

# ବାସ୍ତବ କାର୍ଯ୍ୟ କ୍ଷେତ୍ରରେ ଶାନ୍ତିସେନା

ଶାନ୍ତିସେନାର ପରିକଳ୍ପନାକୁ ଗୋଟିଏ ସାଂଗଠନିକ ରୂପ ଦେଇ ଗଢ଼ିବାକୁ ଗାନ୍ଧୀଜୀ କେବେ ସୁଯୋଗ ପାଇ ନଥିଲେ ଯଦିଓ ତାଙ୍କର କେତେକ ସହକର୍ମୀ ସ୍ଥାନୀୟ ଶାନ୍ତିସେନା ଦଳ ସଂଗଠନ କରିଥିଲେ । ଅଗଷ୍ଟ ୧୯୫୭ରେ ସର୍ବ ଭାରତୀୟ ସ୍ତରରେ ଶାନ୍ତି-ସେନା ସଂଗଠନ କରିବାକୁ ବିନୋବାଜୀ ଆହ୍ୱାନ ଦେଇଥିଲେ । ସେତେବେଳେ ସେ କେରଳରେ ଥାଆନ୍ତି । ସେହି ସମୟରେ ସେ ନିଜେ ଶାନ୍ତିସୈନିକର ପ୍ରଥମ ଦଳଟି ପ୍ରତିଷ୍ଠିତ କରାଇଥିଲେ ।

ବର୍ତ୍ତମାନ ସମଗ୍ର ଭାରତରେ ୧୨୨୪୨ ଜଣ ଶାନ୍ତିସୈନିକ ରହିଛନ୍ତି । ୧୮ବର୍ଷ ବୟସରୁ ଊର୍ଦ୍ଧ୍ୱ ଯେ କୌଣସି ନାଗରିକ ନିମ୍ନୋକ୍ତ ସଂକଳ୍ପମାନ ଗ୍ରହଣ କରି ଶାନ୍ତିସୈନିକ ହୋଇପାରେ ।

ମୁଁ ବିଶ୍ୱାସ କରୁଛି ଯେ:

୧- ସତ୍ୟ ଓ ଅହିଂସା ଉପରେ ପ୍ରତିଷ୍ଠିତ ଏକ ନୂଆ ସମାଜ ନିର୍ମିତ ହେବା ଉଚିତ ।

୨- ସମାଜରେ ମଝି ଦେଉଥିବା ସକଳ ପ୍ରକାର ସଂଘର୍ଷ ଓ ମତଭେଦର ସମାଧାନ ଅହିଂସକ ଉପାୟରେ କରାଯାଇ ପାରେ, ବିଶେଷକରି ଏହି ଆଣବିକ ଯୁଗରେ ଏ ପରି ସମାଧାନ ଆବଶ୍ୟକ ।

୩-ମୌଳିକ ଦୃଷ୍ଟିରୁ ସବୁ ମଣିଷ ସମାନ ।

୪- ଯୁଦ୍ଧ ମାନବିକ ପ୍ରଗତିରେ ମହାପନ୍ଥି ଏବଂ ଅହିଂସା ଜୀବନର ବିରୋଧୀ ।

ଏଣୁ ମୁଁ ସଂକଳ୍ପ କରୁଛି ଯେ:

୧- ମୁଁ ଶାନ୍ତି ପାଇଁ ପ୍ରଚେଷ୍ଟା କରିବି ଏବଂ ସେଥିପାଇଁ ପ୍ରାଣବଳି ଦେବାକୁ ପ୍ରସ୍ତୁତ ରହିବି ।

୨- ଜାତି, ଧର୍ମ, ବର୍ଣ୍ଣ, ରାଜନୈତିକ ମତବାଦ ଆଦିର ଭେଦ ଏକତାରେ ବାଧକ ଅଟନ୍ତି । ଏଣୁ ମୁଁ ଏହିସବୁ ଦଳାଦଳିର ଉପରେ ରହିବାକୁ ସର୍ବଦା ଚେଷ୍ଟିତ ହେବି ।

୩- କୌଣସି ପ୍ରକାର ଯୁଦ୍ଧରେ ସହଯୋଗ କରିବିନାହିଁ ।

୪- ଅହିଂସକ ପ୍ରତିରକ୍ଷା ପାଇଁ ବାତାବରଣ ସୃଷ୍ଟି କରିବା ଓ ପନ୍ଥାର ବିକାଶ କରିବାରେ ସହାୟକ ହେବି ।

୫- ମୁଁ ନିୟମିତ ଭାବରେ କିଛି ସମୟ ମାନବ ସେବାରେ ଲଗାଇବି ।

୬- ଶାନ୍ତିସେନାର ଶୃଙ୍ଖଳା ଓ ନୀତିନିୟମମାନ ମୁଁ ସ୍ୱୀକାର କରୁଛି ।

ସଂକଳ୍ପ ପତ୍ରରେ ଦସ୍ତଖତ କରିବା ପରେ ପ୍ରତ୍ୟେକ ଶାନ୍ତି-ସୈନିକ ଗୋଟିଏ ଶାନ୍ତିକେନ୍ଦ୍ର ସହ ସଂଲଗ୍ନ ରହନ୍ତି । ଗୋଟିଏ ବର୍ଷ ଶିକ୍ଷାନବିଶ ଭାବରେ ରହିବା ପରେ ସେ ଏକ ପୂର୍ଣ୍ଣାଙ୍ଗ ଶାନ୍ତି-ସୈନିକ ହୁଅନ୍ତି । ଅବଶ୍ୟ ବର୍ଷ ମଝିରେ ସେ ଯଦି ଇସ୍ତଫା ଦିଅନ୍ତି କିମ୍ବା କେନ୍ଦ୍ର ଯଦି ତାର ଆଚରଣ ବିଷୟରେ ପ୍ରତିକୂଳକ ମତ ପୋଷଣ କରେ ତେବେ ତାହା ସ୍ୱତନ୍ତ୍ର କଥା ।

**ଶାନ୍ତି କେନ୍ଦ୍ର**

ଦୁଇ ବା ତତୋଧିକ ଶାନ୍ତିସୈନିକ ପାଖ ପାଖ ଅଞ୍ଚଳରେ ରହୁଥିଲେ ଗୋଟିଏ ଶାନ୍ତିକେନ୍ଦ୍ର ପ୍ରତିଷ୍ଠା କରି ପାରନ୍ତି । ଶାନ୍ତି ସେନାର ଏହା ପ୍ରାଥମିକ ଏକକ ।

ପ୍ରତି କେନ୍ଦ୍ରର ସୈନିକମାନେ ସପ୍ତାହରେ ଅନ୍ତତଃ ଥରେ ଏକାଠି ହୋଇ ଗତ ସପ୍ତାହର କାର୍ଯ୍ୟାବଳୀର ବିବରଣୀ ଆଲୋଚନା କରିବେ ଏବଂ ପରବର୍ତ୍ତୀ ସପ୍ତାହର ନିମନ୍ତେ ଏକ ଯୋଜନା ତିଆରି କରିବେ । ନିୟମିତ ସ୍ୱାଧ୍ୟାୟ, ନିୟମିତ ଭାବରେ ସମାଜର କୌଣସି ସେବାମୂଳକ କାର୍ଯ୍ୟ, ସ୍ଥାନୀୟ ଶାନ୍ତିଭଙ୍ଗର ଆଶଙ୍କା ଉପୁଜିଲା କ୍ଷଣି ତାହାର ନିବାରଣ ପାଇଁ ଚେଷ୍ଟା, ଖେଳ କସରତ ଆଦି, ଏହି ସବୁତ୍ତିଁ ଶାନ୍ତିସୈନିକର ସାଧାରଣ କାର୍ଯ୍ୟ ଅଟେ ।

ଅଞ୍ଚଳର ବିଶେଷ ବିଶେଷ ପରିସ୍ଥିତି ନେଇ ଶାନ୍ତିସୈନିକର କାର୍ଯ୍ୟ ବିଭିନ୍ନ ପ୍ରକାରର ହୋଇପାରେ ମାତ୍ର ତା'ର ସମସ୍ତ କାର୍ଯ୍ୟକୁ ତିନୋଟି ପ୍ରଧାନ ଶ୍ରେଣୀରେ ବିଭକ୍ତ କରି ଯାଇପାରେ:—ଯଥା ସେବା, ସ୍ୱାଧ୍ୟାୟ ଓ ଶରୀରଶ୍ରମ ।

ଗୋଟିଏ ଜିଲ୍ଲାରେ ଯଦି ଯଥେଷ୍ଟ ସଂଖ୍ୟକ କେନ୍ଦ୍ର ଥାଏ ତେବେ ସେହି କେନ୍ଦ୍ରମାନଙ୍କର କାର୍ଯ୍ୟ ସବୁକୁ ଶୃଙ୍ଖଳା କରିବାକୁ ଗୋଟିଏ ଜିଲ୍ଲା ଶାନ୍ତିସେନା ସମିତି ବା ଜଣେ ସଂଗଠକ ରହିବା ଆବଶ୍ୟକ । ଜିଲ୍ଲା ଶାନ୍ତିସେନା ସମିତି ରାଜ୍ୟ ସ୍ତରର ଶାନ୍ତି ସମିତି ଦ୍ୱାରା ଗଠିତ ହୁଏ । ରାଜ୍ୟର ସର୍ବୋଦୟ ମଣ୍ଡଳ ଦ୍ୱାରା ରାଜ୍ୟ ଶାନ୍ତିସେନା ସମିତି ଗଠିତ ହୁଏ; ଅବଶ୍ୟ ଅଖିଳ ଭାରତ ଶାନ୍ତିସେନା ମଣ୍ଡଳର ଅଧ୍ୟକ୍ଷଙ୍କର ସମର୍ଥନ ଏଥିରେ ଥିବା ଉଚିତ । ରାଜ୍ୟ ଭିତରେ

ଶାନ୍ତିସେନାର କାର୍ଯ୍ୟ ସବୁକୁ ସଂଗଠିତ କରିବା ଏବଂ ରାଜ୍ୟମଧ୍ୟରେ ଘଟୁଥିବା ଯେ କୌଣସି ଉପଦ୍ରୁତ ଅଂଚଳକୁ ଶାନ୍ତିସୈନିକଙ୍କୁ ପଠାଇବା ରାଜ୍ୟ ଶାନ୍ତିସେନା ସମିତିର କାର୍ଯ୍ୟ ।

ସର୍ବସେବା ସଂଘର ଅଧ୍ୟକ୍ଷଙ୍କ ଦ୍ୱାରା ନିଖିଳ ଭାରତ ଶାନ୍ତି-ସେନା ମଣ୍ଡଳ ଗଠିତ ହୁଏ । ସମଗ୍ର ଭାରତର ଶାନ୍ତିସେନାର କାର୍ଯ୍ୟାବଳୀକୁ ଏହା ଶୃଙ୍ଖଳିତ ଓ ବିକଶିତ କରେ । ଏହି ମଣ୍ଡଳ ତିନିବର୍ଷରେ ଥରେ ନୂଆକରି ଗଢ଼ାଯାଏ । ନିଖିଳଭାରତ ଶାନ୍ତି-ସେନା ମଣ୍ଡଳର ବର୍ତ୍ତମାନ ଅଧ୍ୟକ୍ଷ ହେଉଛନ୍ତି ଶ୍ରୀ ଜୟପ୍ରକାଶ ନାରାୟଣ, ବିନୋବାଜୀ ଶାନ୍ତିସେନାର ସର୍ବୋଚ୍ଚ ସେନାପତି; ଅର୍ଥାତ୍ ଶାନ୍ତି ସୈନିକମାନଙ୍କୁ ନିର୍ଦ୍ଦେଶ ଦେବାର ସର୍ବୋଚ୍ଚ କ୍ଷମତା ତାଙ୍କର ରହିଛି । ଶାନ୍ତିସେନାର ସାଂଗଠନିକ ବ୍ୟବସ୍ଥା ସହିତ ବିନୋବାଜୀଙ୍କର କୌଣସି ବିଧାନଗତ ସଂପର୍କ ନାହିଁ ମାତ୍ର ତାଙ୍କର ପରାମର୍ଶ ନେଇ ମଣ୍ଡଳର ବଡ଼ ବଡ଼ ସିଦ୍ଧାନ୍ତ ଗ୍ରହଣ କରାଯାଏ ।

## ଶାନ୍ତିସେନା ସାଫଲ୍ୟମଣ୍ଡିତ ହୋଇପାରିବ କି ?

ଏହିପ୍ରକାର ପ୍ରଶ୍ନ ବାରମ୍ବାର ଉତ୍ଥାପିତ ହୋଇଥାଏ । ଯେଉଁ ବିଶ୍ୱାସ ଧରି ଶାନ୍ତିସେନା ସଂଗଠନ ଆରମ୍ଭ କରାଯାଇଥିଲା ଗତ ନଅବର୍ଷର ଅଭିଜ୍ଞତା ତାକୁ ଦୃଢ଼ କରିଛି । ଆବଶ୍ୟକତା ତୁଳନାରେ ଏହାର ଆକୃତି ଅବଶ୍ୟ ଛୋଟ । ବିନୋବାଜୀ ପାଞ୍ଚହଜାର ଲୋକ ସଂଖ୍ୟାରେ ଜଣେ ଶାନ୍ତି ସୈନିକ ରହିବା ଆବଶ୍ୟକ ବୋଲି ପରିକଳ୍ପନା କରିଛନ୍ତି । ଏହି ଦୃଷ୍ଟିରୁ ବିଚାର କଲେ ସମଗ୍ର ଭାରତ ପାଇଁ ୯୦,୦୦୦ ଶାନ୍ତିସୈନିକ ଆବଶ୍ୟକ

ହେଉଛି, କିନ୍ତୁ ବର୍ତ୍ତମାନ ୧୨,୦୦୦ ଶାନ୍ତିସୈନିକ ସାରା ଦେଶରେ ରହିଛନ୍ତି, ଏବଂ ଏହି ସଂଖ୍ୟାର ଅର୍ଦ୍ଧେକ କେବଳ ବିହାରରେ ଅଛନ୍ତି । କିନ୍ତୁ ୧୨,୦୦୦ ଶାନ୍ତିସୈନିକ ଥିବା ଏହି ଗୋଷ୍ଠିଟି ଶାନ୍ତିବାହିନୀ କେତେକ ଆଶାଜନକ ଓ ଉତ୍ସାହ ଜନକ ସଫଳତା ହାସଲ କରି ପାରିଛି । ସେମାନେ ବିକ୍ଷୋଭ ପ୍ରଦର୍ଶନ ଓ ବିବାଦ ପ୍ରଭୃତି ବେଳେ ହିଂସାକାଣ୍ଡ ନିବାରଣ କରି ପାରିଛନ୍ତି । ଦୃଷ୍ଟାନ୍ତ ସ୍ୱରୂପ ଗୁଜୁରାଟରେ ସ୍ୱତନ୍ତ୍ର ପ୍ରଦେଶ ଦାବୀକରି ଆନ୍ଦୋଳନ ଚାଲିଥିବା ବେଳେ, ବରୋଦାର ଶାନ୍ତିସୈନିକମାନେ ଶାନ୍ତିରକ୍ଷା କରିବାରେ ବିଶେଷ ଯତ୍ନ କରିଥିଲେ । ସେମାନେ ଶୋଭାଯାତ୍ରା କରିଥିଲେ, ନେତାମାନଙ୍କୁ ଭେଟିଥିଲେ ଓ ପ୍ରଚାରପତ୍ର ବାଣ୍ଟିଥିଲେ, କେତେକ ଘଟଣାରେ ସେମାନେ ପୋଲିସ ଓ ଜନତା ମଧ୍ୟରେ ଠିଆହୋଇ ସଂଘର୍ଷ ନିବାରଣ କରିଥିଲେ । ପୋଲିସ ସେମାନଙ୍କ ସେବାକୁ ପସନ୍ଦ କରିଥିଲେ, ଏବଂ ସେମାନେ ଅହମଦାବାଦକୁ ଚାଲିଯିବାକୁ ଚାହାନ୍ତେ ପୋଲିସ ସେମାନଙ୍କୁ ଅହମଦାବାଦ ନ ଯାଇ ସେହି ସ୍ଥାନରେ ରହିବାକୁ ଅନୁରୋଧ କରିଥିଲା ।

ଇନ୍ଦୋରରେ ମିଲ ମାଲିକ ଓ ଶ୍ରମିକମାନଙ୍କ ମଧ୍ୟରେ ଯେଉଁ ବିବାଦ ଘଟିଥିଲା, ସେଥିରେ ଅନ୍ତତଃ ତିନୋଟି ଘଟଣାରେ ହିଂସାକାଣ୍ଡ ନିବାରଣ କରିବାରେ ଶାନ୍ତିସୈନିକମାନେ ସଫଳ ହୋଇଥିଲେ ।

୧୯୬୧ରେ ଉତ୍ତରପ୍ରଦେଶର ପଶ୍ଚିମାଞ୍ଚଳରେ ସାମ୍ପ୍ରଦାୟିକ ଗଣ୍ଡଗୋଳ ଘଟିବାବେଳେ ଆଗ୍ରାର ଶାନ୍ତିସୈନିକମାନେ ଖୁବ୍ ସାବଧାନ ଫଳରେ ଆଗ୍ରା ନଗରୀର ନିରବଚ୍ଛିନ୍ନ ଶାନ୍ତିରକ୍ଷା ପାଇଁ ପ୍ରଶଂସା ଭାଜନ ହୋଇଥିଲେ । ୧୯୬୪ରେ ବିହାର ଓ ଓଡ଼ିଶାରେ

ଯେତେବେଳେ ଭୟଙ୍କର ସାମ୍ପ୍ରଦାୟିକ ଦଙ୍ଗା ଘଟିଗଲା, ସେହି ଗଣ୍ଡଗୋଳର ତରଙ୍ଗ ଖଡ଼ଗପୁରକୁ ବି ହଲଚଲ କରି-ଦେଲା । କିନ୍ତୁ ସ୍ଥାୟୀ ଶାନ୍ତିସୈନିକମାନଙ୍କର ସାବଧାନତା ଯୋଗୁଁ ଖଡ଼ଗପୁରରେ କୌଣସି ପ୍ରକାରର ଅବାଞ୍ଛନୀୟ ପରିସ୍ଥିତି ଘଟିପାରି ନ ଥିଲା ।

ଅନ୍ୟ କେତେକ ଘଟଣାରେ ବିବାଦର ସମାଧାନ ପାଇଁ ଉପବାସର ସାହାଯ୍ୟ ନିଆଯାଇଛି । କେରଳରେ ମାନନୀୟ ନେତା ଶ୍ରୀ କେଲାପ୍ପନ ସେଠାରେ ଉପୁଜିଥିବା ତିକ୍ତ ରାଜନୈତିକ ବାତା-ବରଣକୁ ଶାନ୍ତ କରିବା ପାଇଁ ଅନଶନର ଆଶ୍ରୟ ନେଇଥିଲେ । ଓଡ଼ିଶାରେ ଆଚାର୍ଯ୍ୟ ହରିହରଙ୍କ ଦ୍ୱାରା ଅନଶନର ଡାକ ଗୃହ ଓ ପ୍ରାଦେଶିକ ସରକାରଙ୍କ ମଧ୍ୟରେ ଦୁଇମାସଧରି ଲାଗିରହିଥିବା ଆନ୍ଦୋଳନର ସମାଧାନ ଘଟାଇବାରେ ସହାୟକ ହୋଇଥିଲା । ମାନ୍ଦ୍ରାଜର ହିନ୍ଦିବିରୋଧୀ ଆନ୍ଦୋଳନର ବିରତି ପାଇଁ ବିନୋବାଜୀଙ୍କ ଅନଶନ ସର୍ବଜନ ବିଦିତ ।

ହିଂସାକାଣ୍ଡମାନ ତୀବ୍ର ଓ ବ୍ୟାପକ ହେବା କାଳରେ ଶାନ୍ତିସୈନିକମାନେ ଲୋକଙ୍କୁ ଶାନ୍ତ କରିବାକୁ ଚେଷ୍ଟା କରିଥାନ୍ତି । ସ୍ଥାୟୀ ଶାନ୍ତି ସୈନିକମାନେ ମୁଷ୍ଟିମେୟ ହୋଇଥିଲେ ବି ଏ ଦିଗରେ ଯଥାଶକ୍ତି ଉଦ୍ୟମ କରିଥାନ୍ତି । କେତେକ ଘଟଣାରେ ହିଂସାକାଣ୍ଡର ସମ୍ବାଦ ପାଇବାମାତ୍ରେ ବହୁ ସଂଖ୍ୟାରେ ଶାନ୍ତି-ସୈନିକ ସେଠାକୁ ପଠା ଯାଇଛନ୍ତି । ସେମାନେ ଲୋକଙ୍କୁ ଶାନ୍ତ କରିବା, ସନ୍ଦେହ ଦୂର କରିବା ଓ ସ୍ଥାନଚ୍ୟୁତ ଲୋକମାନଙ୍କୁ ଥଇଥାନ କରାଇବାରେ ବେଶ୍ ସଫଳ ହୋଇଛନ୍ତି । ଆସାମରେ ବଙ୍ଗାଳି ବିରୋଧୀ ଦଙ୍ଗାବେଳେ ଭାରତର ସବୁ ଅଞ୍ଚଳରୁ ଶାନ୍ତି-

ସୈନିକମାନେ ସେଠାକୁ ଛୁଟି ଯାଇଥିଲେ । ପରେ ପରେ ପଣ୍ଡିତ ଜବାହରଲାଲ ନେହେରୁଙ୍କ ଅନୁରୋଧ କ୍ରମେ ବିନୋବାଜୀ ସ୍ୱୟଂ ଆସାମକୁ ଯାଇ ସେଠାରେ ଶାନ୍ତିସେନାର କାର୍ଯ୍ୟ କଳାପର ମାର୍ଗ ଦର୍ଶନ କରିଥିଲେ ।

ସୁନ୍ଦରଗଡ଼, ରାଞ୍ଚି ଓ ସିଂହଭୂମ ଜିଲାମାନଙ୍କରେ ସାମ୍ପ୍ରଦାୟିକ ଗଣ୍ଡଗୋଳ ଘଟିଗଲା ବେଳେ ବିହାର ଓ ଓଡ଼ିଶାରୁ ବହୁ ସଂଖ୍ୟାରେ ଶାନ୍ତିସୈନିକ ଉପଦ୍ରୁତ ଅଞ୍ଚଳରେ ପହଞ୍ଚି ଉପରୋକ୍ତ ମତେ ସେବାକାର୍ଯ୍ୟ ସଫଳତାର ସହ କରିଥିଲେ । ହତ୍ୟାକାଣ୍ଡରେ ଲିପ୍ତ ବହୁ ଲୋକଙ୍କୁ ଅନୁତାପ କରିବାକୁ ପ୍ରବର୍ତ୍ତାଇବାରେ ସେମାନେ ସଫଳ ହୋଇଥିଲେ ଏବଂ ଯେଉଁ ଗୃହଗୁଡ଼ିକ ସେମାନେ ପୋଡ଼ି ଦେଇଥିଲେ, ସେଗୁଡ଼ିକ ପୁଣି ଗଢ଼ିବାରେ ସାହାଯ୍ୟ କରିବାକୁ ଗଣ୍ଡଗୋଳକାରୀମାନଙ୍କୁ ରାଜି କରାଇଥିଲେ ।

ବିହାରର ସୀତାମଢ଼ୀଠାରେ ଘଟିଥିବା ଏକ ସାମ୍ପ୍ରଦାୟିକ ଗଣ୍ଡଗୋଳରେ ସଂଖ୍ୟାଲଘୁ ସମ୍ପ୍ରଦାୟର ଲୋକଙ୍କର ଘରସବୁ ଲୁଟତରାଜ କରିବା ମୁଖ୍ୟ ବିଶେଷତ୍ୱ ଥିଲା । ଶାନ୍ତି ସେନିକମାନେ ଏହି ଲୁଟତରାଜକୁ ଅଧିକ ବ୍ୟାପକ କରାଇ ନ ଦେବାରେ ସକ୍ଷମ ହୋଇଥିଲେ । ପଞ୍ଜାବର ପଞ୍ଜାବୀ ସୁବା ବିରୋଧୀ ଆନ୍ଦୋଳନ, ମାନ୍ଦ୍ରାଜରେ ହିନ୍ଦି ବିରୋଧୀ ଉତ୍ତେଜନା ଓ ଉତ୍ତର ପ୍ରଦେଶର ପଶ୍ଚିମାଞ୍ଚଳରେ ସମ୍ପ୍ରଦାୟିକ ଗଣ୍ଡଗୋଳବେଳେ ଶାନ୍ତିସୈନିକମାନେ ତତ୍ପର ଥିଲେ ।

ଅନୁଭୂତିରୁ ଜଣାଯାଉଛି ଯେ, ବାହାରୁ ଶାନ୍ତିସୈନିକମାନେ ଠିକଣା ବେଳରେ ପହଞ୍ଚି ଅଶାନ୍ତିର ସମ୍ମୁଖୀନ ହୋଇ ପାରନ୍ତି ନାହିଁ । ମାତ୍ର ସ୍ଥାନୀୟ ଶାନ୍ତିସୈନିକ ବହୁ ସଂଖ୍ୟାରେ ଥଲେ

ହିଂସାକାଣ୍ଡ ଓ ଅଶାନ୍ତିର ସଫଳ ପ୍ରତିକାର କରିପାରନ୍ତି । ଏଥିରୁ ସ୍ପଷ୍ଟ ହେଉଛି ଯେ ବିନୋବାଜୀଙ୍କ ପରିକଳ୍ପନା ଅନୁସାରେ ପ୍ରତି ୫,୦୦୦ ଲୋକସଂଖ୍ୟାରେ ଜଣେ ଲେଖାଏଁ ଶାନ୍ତିସୈନିକ ଥାଇ ସାରା ଦେଶରେ ଶାନ୍ତିସେନାର ଏକ ବ୍ୟାପକ ସଂଗଠନ କରାଗଲେ ତାହା ଶାନ୍ତିରକ୍ଷାର ଏକ ସକ୍ଷମ ଶକ୍ତି ହୋଇପାରିବ ।

ସମାଜର ଦରିଦ୍ର ଓ ଅସହାୟ ଗୋଷ୍ଠୀଙ୍କୁ ଶୋଷଣ ଓ ଅତ୍ୟାଚାରରୁ ରକ୍ଷା କରିବା ଶାନ୍ତିସେନାର ଅନ୍ୟଏକ କାର୍ଯ୍ୟ । ବିହାରର ପୁର୍ଣ୍ଣିଆ ଜିଲ୍ଲା ଓ ଓଡ଼ିଶାର କୋରାପୁଟ ଜିଲ୍ଲାରେ ଶାନ୍ତିସୈନିକମାନେ ସଫଳତାର ସହିତ ଲାଞ୍ଚ ଓ ଦୁର୍ନୀତି ବିରୁଦ୍ଧରେ ଅଭିଯାନ କରିଛନ୍ତି । କୋରାପୁଟର ଭୟାଳୁ ଆଦିବାସୀଙ୍କ ଭିତରେ ନିର୍ଭିକତା ସଞ୍ଚାର କରିବାରେ ସେମାନେ ସଫଳ ହୋଇଛନ୍ତି ।

ବିହାରର ବନ୍ୟା, ଆନ୍ଧ୍ରର ଝଡ଼ ବତାସ, ପୁନାର ଖଡ଼କବାସଲା ଆନିକଟ ଭାଙ୍ଗିଯିବା ଫଳରେ ଘଟିଥିବା ବନ୍ୟା ଦୈବୀ ବିପତ୍ତିବେଳେ ବି ଶାନ୍ତିସେନା ବଡ଼ ସହାୟକ ହୋଇ ପାରିଛି ।

ଶାନ୍ତିସେବା ଦଳ

ଶାନ୍ତିସେନାର ଏହା ଏକ ସ୍ୱେଚ୍ଛାସେବକ ଶାଖା । ଏହି ସେବାଦଳର ସଦସ୍ୟମାନଙ୍କୁ ଏକ ଅପେକ୍ଷାକୃତ ସରଳ ସଂକଳ୍ପ କରିବାକୁ ପଡ଼େ ।

ଯେଉଁମାନେ ଶାନ୍ତିସୈନିକର କଠିନତର ସଂକଳ୍ପ ଗ୍ରହଣ କରିବାକୁ ପ୍ରସ୍ତୁତ ନୁହନ୍ତି ଅଥଚ ବିଶ୍ୱାସ କରନ୍ତି ଓ ଶାନ୍ତି-

କାମରେ ସାହାଯ୍ୟ କରିବାକୁ ଚାହାନ୍ତି, ସେହିପରି ଲୋକେ ଯେପରି ଅଧିକରୁ ଅଧିକ ସଂଖ୍ୟାରେ କାର୍ଯ୍ୟ କରିବାକୁ ବାହାରନ୍ତି ଏହି ଉଦ୍ଦେଶ୍ୟରେ ଏ ସେବାଦଳ ଗଠିତ ।

ଏହାର ଯୋଡ଼ାଏ ଶାଖା ରହିଛି; ବାରରୁ ଅଠର ବର୍ଷ ବୟସର କିଶୋରମାନଙ୍କୁ ନେଇ କିଶୋର ଶାନ୍ତିଦଳ ଏବଂ ଅଠରରୁ ତିରିଶ ବର୍ଷ ବୟସର ଯୁବକ ଯୁବତୀଙ୍କି ନେଇ ତରୁଣ ଶାନ୍ତିଦଳ । ଆଜିକାଲି ଏପରି କୌଣସି ଗଣ୍ଡଗୋଳ ଘଟୁନାହିଁ ଯହିଁରେ କିଶୋର ଓ ତରୁଣମାନେ ମୁଖ୍ୟ ଅଂଶ ଗ୍ରହଣ ନ କରନ୍ତି । କିଶୋର ଶାନ୍ତିଦଳ ଯୁବକ ଯୁବତୀମାନଙ୍କ ମଧ୍ୟରେ ସକ୍ରିୟ ଗଠନମୂଳକ ଦୃଷ୍ଟିଭଙ୍ଗି ସଞ୍ଚାର କରିବାକୁ ଚାହେଁ ଏବଂ ସେମାନଙ୍କୁ ଗଠନମୂଳକ ଓ ଫଳପ୍ରଦ ପନ୍ଥାରେ ପରିଚାଳିତ କରିବାକୁ ଆଶା କରେ ।

୧୯୬୮ରୁ କିଶୋର ଶାନ୍ତିଦଳ ପାଇଁ ବର୍ଷକୁ ବର୍ଷ ସର୍ବ ଭାରତୀୟ ସ୍ତରରେ ଶିବିରମାନ ଗଡ଼ା ଯାଉଛି ଏବଂ ଏହାର ଉତ୍ସାହଜନକ ଫଳ ଦେଖାଯାଇଛି । ଯେଉଁ ଯୁବକ ଯୁବତୀ-ମାନେ ଏହି ଶିବିରମାନଙ୍କରେ ଯୋଗ ଦେଇଥିଲେ, ସେମାନଙ୍କ ମଧ୍ୟରୁ ଅନେକ ସେମାନଙ୍କ ନିଜ ନିଜ ଅଞ୍ଚଳରେ ଶାନ୍ତିସେନା ଦଳର ଶାଖା ଖୋଲି ଗଠନମୂଳକ କାମ କରୁଛନ୍ତି ।

ସାମାଜିକ ସେବା ଓ ସଂଗଠନ କାର୍ଯ୍ୟପାଇଁ ତରୁଣ ଶାନ୍ତିଦଳ ସଂଗଠିତ ଓ ସୁଯୋଗ୍ୟ ସ୍ୱେଚ୍ଛାସେବକ ବାହିନୀ ଯୋଗାଇବ ବୋଲି ଆଶା କରାଯାଉଛି । ଉଭୟ ସହର ଓ ମଫସଲ ଅଞ୍ଚଳରେ ଶାନ୍ତିସେନାର ଶାଖାସବୁ କାମ କରୁଛନ୍ତି । ସହର ଅଞ୍ଚଳ-ମାନଙ୍କରେ ଶାନ୍ତିସେନାହିଁ ସର୍ବୋଦୟ ଆନ୍ଦୋଳନର ଏକମାତ୍ର

ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟକ୍ରମ । ଅଧିକାଂଶ ଅଶାନ୍ତି ଓ ଗଣ୍ଡଗୋଳସବୁ ପ୍ରଥମେ ସହର ଅଞ୍ଚଳରେ ସୃଷ୍ଟି ହୁଏ । ଏଣୁ ଏହି ଅଶାନ୍ତି ଓ ଗୋଳମାଳସବୁର ଜନ୍ମସ୍ଥାନରେ ହିଁ ଏସବୁର ନିୟନ୍ତ୍ରଣ କରିବା ଏକ ଗୁରୁତ୍ୱପୂର୍ଣ୍ଣ କର୍ତ୍ତବ୍ୟ ।

ପୂର୍ବବର୍ଣ୍ଣିତ ବିବିଧ କାର୍ଯ୍ୟକ୍ରମର ଅବିଚ୍ଛେଦ୍ୟ ଅଂଶ ଭାବରେ ମଫସଲ ଅଞ୍ଚଳପାଇଁ ଶାନ୍ତିସେନାର ଏକ ବିଶିଷ୍ଟ ଗୁରୁତ୍ୱ ରହିଛି । ଗ୍ରାମଦାନର ଆଦର୍ଶ ପ୍ରଚାର କରିବାଟା ଶାନ୍ତିସେନାର ଏକ ଗୁରୁତ୍ୱପୂର୍ଣ୍ଣ କର୍ତ୍ତବ୍ୟ । କାରଣ ଯେଉଁ ଅନ୍ତ ସଂଘାତିକ ସଂଘର୍ଷ ସମଗ୍ର ଦେଶକୁ ଗ୍ରାସ କରିବା ଅସମ୍ଭବ ନୁହେଁ ତାହାର ମୂଳ କାରଣକୁ ଗ୍ରାମଦାନ ଲୋପ କରିବାକୁ ଚାହେଁ, କୌଣସି ଗାଁ ଗ୍ରାମଦାନ ହେବାପରେ ସେଠାରେ ଅନ୍ୟାନ୍ୟ କାର୍ଯ୍ୟ ଭିତରେ ଶାନ୍ତିସେନା ସଂଗଠନକୁ ପ୍ରାଥମିକତା ଦିଆଯାଏ ।

ଗ୍ରାମଦାନୀ ଗ୍ରାମମାନଙ୍କରେ ବି ସଂଘର୍ଷ ଓ ଦଳାଦଳି ଘଟିବା ସମ୍ଭବ । ଗାଁ ଗାଁ ଭିତରେ ବିବାଦ ଓ ଉତ୍ତେଜନା ଘଟିପାରେ । ମାମଲାମକଦମା ମଫସଲ ଅଞ୍ଚଳମାନଙ୍କରେ ଏକ ବଡ଼ ଅଭିଶାପ । ଏଥିରେ ବହୁ ଧନ ବରବାଦ ହୁଏ ଏବଂ ଗ୍ରାମମାନଙ୍କରେ ଶାନ୍ତି ନଷ୍ଟ ହୁଏ । ସମାଜ ବିରୋଧୀ ଆଚରଣ ଓ ଅପରାଧର ସମସ୍ୟା-ମାନ ମଧ୍ୟ ଗ୍ରାମମାନଙ୍କ ଆଗରେ ରହିଛି । ମଫସଲ ଅଞ୍ଚଳର ଶାନ୍ତିସୈନିକ ଓ ଶାନ୍ତିସେବକମାନଙ୍କୁ ଏସବୁ ସମସ୍ୟାର ସମାଧାନ କରିବାକୁ ପଡ଼ିବ ।

## ପୋଷାକ

କର୍ତ୍ତବ୍ୟରେ ନିଯୁକ୍ତ ଥିବାବେଳେ ଶାନ୍ତିସୈନିକମାନଙ୍କୁ ଧଳା ପୋଷାକ ପିନ୍ଧିବାକୁ ପଡ଼େ ଏବଂ ମୁଣ୍ଡରେ କେଶରୀ ରଙ୍ଗର

ଖଦ୍ଦର ରୁମାଲ ଗୁଡ଼ାଇବାକୁ ହୁଏ । ରୁମାଲଟି ୨୪ ଇଞ୍ଚିଆ ବର୍ଗ-କ୍ଷେତ୍ରାକୃତି ଏବଂ ମୁଣ୍ଡରେ ବାନ୍ଧିବାକୁ ଏହାକୁ ତ୍ରିଭୁଜାକାରରେ ଭାଙ୍ଗିବାକୁ ପଡ଼େ ।

ଶାନ୍ତିସେବକମାନଙ୍କୁ ଧଳା ହାଫ୍‌ପ୍ୟାଣ୍ଟ ଓ କମିଜ ପିନ୍ଧିବାକୁ ପଡ଼େ ଏବଂ ଶାନ୍ତିସୈନିକମାନଙ୍କ ପରି ରୁମାଲକୁ ବେକରେ ବାନ୍ଧିବାକୁ ହୁଏ । ଖଦ୍ଦର କନାରେ ତିଆରି କେଶରୀ ରଙ୍ଗର ବେଲ୍‌ଟ ମଧ୍ୟ ସେମାନଙ୍କୁ ବ୍ୟବହାର କରିବାକୁ ହୁଏ । ଧାତୁ ନିର୍ମିତ ଛୋଟିଆ ବ୍ୟାଜ୍ ଗୋଟିଏ ଲେଖାଏଁ ବାଁ ଛାତିରେ ମାରିବାକୁ ସେମାନଙ୍କୁ ଦିଆଯାଏ ।

## ସର୍ବୋଦୟ ପାତ୍ର

ସର୍ବୋଦୟ ପାତ୍ର ଶାନ୍ତିସେନା କାର୍ଯ୍ୟକ୍ରମର ଏକ ଗୁରୁତ୍ୱ-ପୂର୍ଣ୍ଣ ଅଂଶ । ଏହି କାର୍ଯ୍ୟକ୍ରମକୁ ସମର୍ଥନ ଜଣାଉଥିବା ପ୍ରତ୍ୟେକ ଗୃହସ୍ଥ ଗୋଟିଏ ପାତ୍ରରେ ପ୍ରତିଦିନ ମୁଠିଏ ଲେଖାଏଁ ଖାଦ୍ୟଶସ୍ୟ ପକାଇବ ବୋଲି ଆଶା କରାଯାଏ । ସର୍ବୋଦୟ ଆନ୍ଦୋଳନ ପ୍ରତି ତାଙ୍କର ସମର୍ଥନ ଓ ସାହାଯ୍ୟର ଏହା ପ୍ରତୀକ । ପରିବାର ଭିତରେ ଥିବା ସବୁଠୁ ଛୋଟ ଶିଶୁ ଏହି ମୁଠିକ ଶସ୍ୟ ପ୍ରତ୍ୟହ ପାତ୍ରରେ ପକାଇବ ବୋଲି ବିନୋବାଜୀ ଆଶା କରନ୍ତି । ଏହି କାର୍ଯ୍ୟ ନିୟମିତ ଭାବରେ କରାଗଲେ ଅତି ଶୈଶବରୁ ପିଲାମାନଙ୍କ ଭିତରେ ଏହା ଦାନର ଭାବନା ଓ ସାମାଜିକ ଚେତନା ସୃଷ୍ଟି କରିବ ।

ବର୍ତ୍ତମାନ ଏହି ସର୍ବୋଦୟ ପାତ୍ର ପ୍ରୋଗ୍ରାମ ଆନ୍ଧ୍ର ଓ ମାନ୍ଦ୍ରାଜ ପ୍ରଦେଶର ରାଜଧାନୀ ସମେତ କେତେକ ବଡ଼ ବଡ଼ ସହରରେ ଖୁବ୍ ସଫଳତାର ସହିତ ଓ ସଂଗଠିତ ଭାବରେ କାର୍ଯ୍ୟକାରୀ ହେଉଛି ।

## ଅନ୍ୟାନ୍ୟ କାର୍ଯ୍ୟକ୍ରମ

୧୯୬୨ରେ ଭାରତ ଚୀନ ବିବାଦ ବେଳେ ସେ ସମ୍ପର୍କରେ ସର୍ବସେବା ସଂଘ ଏକ ପ୍ରସ୍ତାବ ଗ୍ରହଣ କରିଥିଲା । ସେହି ପ୍ରସ୍ତାବରେ କୁହା ଯାଇଛି :—"ସୀମା ଅଞ୍ଚଳରେ ଲୋକଙ୍କ ମଧ୍ୟରେ ଅହିଂସ ପ୍ରତିରୋଧ ଶକ୍ତିର ବିକାଶ ଘଟାଇବାଟା ଆମର ବହୁ ଗୁରୁତ୍ୱପୂର୍ଣ୍ଣ କର୍ତ୍ତବ୍ୟ ମଧ୍ୟରୁ ଅନ୍ୟତମ । ଶାନ୍ତିସୈନିକମାନେ ଗାଁ ଲୋକଙ୍କ ଭିତରେ ଆତ୍ମନିର୍ଭରଶୀଳତାର ବିକାଶ ଯଥାସମ୍ଭବ ଘଟାଇବେ ଏବଂ ଅସହଯୋଗ ପନ୍ଥାରେ ଆକ୍ରମଣର ସମ୍ମୁଖୀନ ହେବାକୁ ସେମାନଙ୍କୁ ପ୍ରେରଣା ଦେବେ । ଦରକାର ପଡ଼ିଲେ ଶାନ୍ତିସୈନିକ-ମାନେ ଏଥିପାଇଁ ନିଜକୁ ବଳି ଦେବାକୁ ପ୍ରସ୍ତୁତ ରହିବା ଏବଂ ଲୋକଙ୍କୁ ମଧ୍ୟ ସେହିପରି କରିବାକୁ ପ୍ରେରଣା ଦେବା ଉଚିତ ।

ଅହିଂସକ ପ୍ରତିରୋଧଭାବ ଓ ରାଷ୍ଟ୍ରୀୟ ସଂହତିର ପରିପୁଷ୍ଟି ଏହି ଦୁଇଟି କାର୍ଯ୍ୟରେ ସହଯୋଗ କରିବାକୁ ସର୍ବସେବାସଂଘ ଅହିଂସରେ ଆସ୍ଥା ଓ ନିଷ୍ଠା ରଖିଥିବା ଅନୁଷ୍ଠାନ ତଥା ବ୍ୟକ୍ତି ବିଶେଷଙ୍କୁ ନିମନ୍ତ୍ରଣ କରିଥିଲା ।

ଏହାର ଫଳରେ ଏହି ପ୍ରକାରର ପ୍ରଧାନ ପ୍ରଧାନ ଅନୁଷ୍ଠାନର ପ୍ରତିନିଧିଙ୍କୁ ନେଇ ଏକ ସଂଯୋଜକ ସମିତି ଗଠିତ ହେଲା । ବର୍ତ୍ତମାନ ଏହି ସମିତି ଅଧୀନରେ ସୀମାନ୍ତ ଅଞ୍ଚଳ ମାନଙ୍କରେ ୧୨୩ଟି କେନ୍ଦ୍ର ସ୍ଥାପିତ ହୋଇ କାମ କରୁଛି । ଏମାନଙ୍କ ମଧ୍ୟରୁ ୩୮ଟି କେନ୍ଦ୍ର ଆସାମରେ, ୭ଟି ନେଫାରେ, ୨ଟି ନାଗାଲାଣ୍ଡରେ, ଗୋଟିଏ ହିମାଚଳରେ, ୨ଟି ଉତ୍ତର ପଞ୍ଜାବରେ, ୩୯ଟି ପୂର୍ଣ୍ଣିଆ ଜିଲ୍ଲାରେ ଓ ତିନୋଟି ପଶ୍ଚିମ ବଙ୍ଗଳାରେ ରହିଛି । ପାକିସ୍ଥାନକୁ ଲାଗିଥିବା ଭାରତର ସୀମାନ୍ତ ଅଞ୍ଚଳମାନଙ୍କରେ ମଧ୍ୟ ଏହିପରି କାମ

ଆରମ୍ଭ କରିଦେବାକୁ ଅଳ୍ପଦିନ ହେଲା ସ୍ଥିର କରାହୋଇଛି । ଏହି କାର୍ଯ୍ୟକ୍ରମରେ ଶାନ୍ତିସେନା ମଧ୍ୟ ଯୋଗଦାନ କରିଛି ।

ସୀମାନ୍ତ ଅଞ୍ଚଳର କାର୍ଯ୍ୟକ୍ରମର ପ୍ରଧାନ ପ୍ରଧାନ ଉଦ୍ଦେଶ୍ୟ ହେଉଛି :—

୧) ସୀମାନ୍ତ ଲୋକଙ୍କର ଭାରତର ଅନ୍ୟାନ୍ୟ ଅଞ୍ଚଳ ସହିତ ଭାବାତ୍ମକ ଏକତା ପ୍ରତିଷ୍ଠା କରିବା ।

୨) ସୀମାନ୍ତ ଲୋକଙ୍କର ବୈଷୟିକ ଓ ନୈତିକ ଅଗ୍ରଗତିରେ ସାହାଯ୍ୟ କରିବା ।

୩) ସୀମାନ୍ତ ଲୋକଙ୍କ ଭିତରେ ବହିରାକ୍ରମଣ ବିରୋଧରେ ଅହିଂସ ପ୍ରତିରୋଧ ଶକ୍ତି ଜାଗ୍ରତ କରାଇବା ।

୪) ସୀମାନ୍ତ ଅଞ୍ଚଳରେ ଲୋକଙ୍କ ଭିତରେ ମୈତ୍ରୀ ଓ ସଦିଚ୍ଛାରେ ଏପରି ଏକ ବାତାବରଣ ସୃଷ୍ଟି କରାଇବା ଯାହାର ପ୍ରଭାବ ସୀମାର ଅପର ପାର୍ଶ୍ୱରେ ମଧ୍ୟ ଅନୁଭୂତ ହେବ ।

ଏହି କେନ୍ଦ୍ରମାନଙ୍କରେ ଯେଉଁ କାର୍ଯ୍ୟସବୁ କରାଯାଇଛି, ତାହାର ଫଳ ଉତ୍ସାହଜନକ ହୋଇଛି । ଏଠାରେ ଉଲ୍ଲେଖ କରାଯାଇପାରେ ଯେ ପଣ୍ଡିତ ଜବାହରଲାଲଙ୍କ ଉତ୍ସାହ କ୍ରମେ ନେଫା ଅଞ୍ଚଳରେ କେନ୍ଦ୍ରମାନ ଖୋଲା ଯାଇଥିଲା ଏବଂ ଏ ଅଞ୍ଚଳରେ କୌଣସି ପ୍ରକାର ସେବା କେନ୍ଦ୍ର ଖୋଲା ହେବାଟା ଏହି ପ୍ରଥମ । ଏହା ପୂର୍ବରୁ ଏହିସବୁ ଅଞ୍ଚଳକୁ ଭାରତର ଅନ୍ୟାନ୍ୟ ଅଞ୍ଚଳରୁ ବିଚ୍ଛିନ୍ନ କରି ରଖିବା ଭାରତ ସରକାରଙ୍କ ନୀତି ଥିଲା ।

## ଦଲ୍ଲୀ ପିକଙ୍ଗ୍ ମୈତ୍ରୀଯାତ୍ରା

ଭାରତ ଓ ଚୀନ ଭିତରେ ମୈତ୍ରୀଭାବର ସୃଷ୍ଟି ପାଇଁ ଏହି ଯାତ୍ରା ୧୯୬୩ ମାର୍ଚ୍ଚ ମାସରେ ଆରମ୍ଭ କରାଗଲା । ଭାରତୀୟ ଶାନ୍ତିସେନା ବିଶ୍ୱ ଶାନ୍ତିସେନାକୁ ଏହି ଯୋଜନାକୁ କାର୍ଯ୍ୟକାରୀ କରିବାକୁ ଅନୁରୋଧ କରିଥିଲେ ଏବଂ ଏହି ଶେଷୋକ୍ତ ଅନୁଷ୍ଠାନ ଏହି ଯାତ୍ରାର ସଂଗଠନ କରିଥିଲା । ଏହା ସତ୍ୟ ଯେ ଚୀନ ସରକାର ସୀମା ପାରହେବାକୁ ପଦଯାତ୍ରୀମାନଙ୍କୁ ଅନୁମତି ନ ଦେବାରୁ ଯାତ୍ରା ଉଦ୍ଦେଶ୍ୟ ସଫଳ ହୋଇ ନଥିଲା । କିନ୍ତୁ ଭାରତ ସରକାର ଖଣ୍ଡିଏ ଅନ୍ତରାଷ୍ଟ୍ରୀୟ ଦଳକୁ ନିଜ ଦେଶ ଭିତରେ ପଦଯାତ୍ରା କରିବାକୁ ଅନୁମତି ଦେଇ ନିଜର ଉଦାରତା ପ୍ରକାଶ କରିଥିଲେ । ଏହି ଯାତ୍ରା ଦେଶର ଯୁଦ୍ଧଖୋର ମନୋବୃତ୍ତିକୁ ପ୍ରଶମିତ କରିବାରେ ସାହାଯ୍ୟ କରିଥିଲା ।

## ନାଗାଭୂମି ଶାନ୍ତି ମିଶନ

ଶ୍ରୀ ଜୟପ୍ରକାଶ ନାରାୟଣ ନାଗାଭୂମି ଶାନ୍ତି ମିସନ୍‌ର ଜଣେ ସଭ୍ୟ ଥିଲେ ବି ଶାନ୍ତିସେନା ମଣ୍ଡଳର ଏହା ସହିତ ପ୍ରତ୍ୟକ୍ଷ ସଂପର୍କ ନଥିଲା । ତଥାପି ଦୀର୍ଘ କାଳଧରି ନାଗା ସମସ୍ୟାରେ ଶାନ୍ତିସେନା ମଣ୍ଡଳ ଆଗ୍ରହ ପ୍ରକାଶ କରି ଆସିଛି ଏବଂ କୋହିମାରେ ଏହାର ଏକ ଶାନ୍ତିକେନ୍ଦ୍ର ମଧ୍ୟ ରହିଛି ।

ନାଗାଭୂମି ଯେ ଭାରତର ଏକ ଅଂଶ ଏହା ଶାନ୍ତିସେନା ମଣ୍ଡଳ ବିଶ୍ୱାସ କରେ ମାତ୍ର ନାଗାମାନଙ୍କ ସଙ୍ଗରେ ବିରୋଧ ଚାଲିଥିବାବେଳେ ସେମାନଙ୍କ ଉପରେ ଯେଉଁ ଅତ୍ୟାଚାର କରା-

ପାଇଛି, ତାହା ନାଗାମାନଙ୍କ ମନକୁ ଶକ୍ତ କରି ଦେଇଛି ବୋଲି ମଧ୍ୟ ତାର ବିଶ୍ୱାସ । ବହୁବର୍ଷର ବିରୋଧ ପରେ ପ୍ରଥମ ଥର ପାଇଁ ମିସନର ପ୍ରଯତ୍ନ ଫଳରେ ନାଗାଭୂମିରେ ଶାନ୍ତି ପ୍ରତିଷ୍ଠିତ ହୋଇଛି । ନାଗାଭୂମିର ଲୋକଙ୍କ ପକ୍ଷେ ଏହା ଏକ ଆଶୀର୍ବାଦ ହୋଇଛି ଏବଂ ଶାନ୍ତିପୂର୍ଣ୍ଣ ସମାଧାନର ସମ୍ଭାବନା ଦ୍ୱାର ଉନ୍ମୁକ୍ତ କରିଛି ।

# ଏକାଦଶ ଅଧ୍ୟାୟ

## ଉପସଂହାର

ପୂର୍ବ ଅଧ୍ୟାୟମାନଙ୍କରେ ଗ୍ରାମଦାନ, ଖଦି ଓ 'ଶାନ୍ତିସେନା', ଏହି ତ୍ରିବିଧ କାର୍ଯ୍ୟକ୍ରମର ବିଭିନ୍ନ ବିଭାଗମାନଙ୍କର ଆମ୍ଭେମାନେ ଅଲଗା ଅଲଗା ଭାବରେ ବିଚାର କରିଛୁଁ । ମାତ୍ର ବିନୋବାଙ୍କ ବୁଝାଇବା ଅନୁସାରେ ଏମାନେ ଏକାଠି ବନ୍ଧାବନ୍ଧା ଯାଇଥିବା ତିନୋଟି ଅଲଗା ଅଲଗା କାର୍ଯ୍ୟକ୍ରମ ନୁହେଁ, ମାତ୍ର ତ୍ରିମୂର୍ତ୍ତି ପ୍ରତିମା'ର ତିନି ମୁହଁ ପରି ଏହି ତିନୋଟି ଗୋଟିଏ ମାତ୍ର ଏକାତ୍ମ ଯୋଜନାର ତିନୋଟି ବିଭାଗ ମାତ୍ର । ତ୍ରିମୂର୍ତ୍ତିର ତିନୋଟି ମୁହଁକୁ ଅଲଗା ଅଲଗା ପୂଜା ନକରି ସମଗ୍ର ମୂର୍ତ୍ତିକୁହିଁ ପୂଜା କରାଯାଏ ।

ଭାରତ କାହିଁକି ସମଗ୍ର ପୃଥିବୀ ମଧ୍ୟ ବର୍ତ୍ତମାନ ତିନୋଟି ବ୍ୟାଧିଦ୍ୱାରା ଆକ୍ରାନ୍ତ; ଯଥା ପୁଞ୍ଜିବାଦ, ଅମଲାତନ୍ତ୍ର ଶାସନ ଓ ସୈନିକବାଦ, ପୂର୍ବୋକ୍ତ ତ୍ରିବିଧ କାର୍ଯ୍ୟକ୍ରମର ତିନୋଟି ବିଭାଗ ଏହି ତିନୋଟି ବ୍ୟାଧିର ପ୍ରତିଷେଧକ ଶକ୍ତିର ପ୍ରତୀକ । ଗ୍ରାମଦାନ ବିକେନ୍ଦ୍ରିତ ଶାସନ ଓ ଯୋଜନାର ମୂଳଦୁଆ ପକାଇ ଅମଲାତନ୍ତ୍ରର ବାଲଫିଟା ଶାସନକୁ ଲୋପ କରିବାକୁ ଚାହେଁ । ଖଦି ଓ ଗ୍ରାମୋ-ଦ୍ୟୋଗ ପୁଞ୍ଜିବାଦର ଅବସାନ ଘଟାଇବା ଲକ୍ଷ୍ୟ ଘୋଷଣ କରେ ଏବଂ ଶାନ୍ତିସେନା ପୋଲିସ ଓ ସଶସ୍ତ୍ର ସେନାର ଆବଶ୍ୟକତାକୁ ଲୋପ କରିବାକୁ ଚାହେଁ ।

ଏହି ତିନୋଟି ବ୍ୟାଧି ଅଲଗା ଅଲଗା ଦେଖା ଗଲେ ବି ଏମାନେ ଗୋଟିଏ ମାତ୍ର ଅନ୍ତର୍ନିହିତ ବ୍ୟାଧିର ବିଭିନ୍ନ ଲକ୍ଷଣ

ମାତ୍ର । ଏହାର ଫଳପ୍ରଦ ପ୍ରଚ୍ଛକର ପାଇଁ ଗ୍ରାମଦାନ, ଖଦୀ ଓ ଶାନ୍ତିସେନା ଏହି ତିନୋଟି ଉପଯୁକ୍ତ ଔଷଧ ଅଟେ ।

ମାତ୍ର ବର୍ତ୍ତମାନ ପାଇଁ ତୋଫାନ ଗ୍ରାମଦାନ ଆନ୍ଦୋଳନ ନିମନ୍ତେ ଆହ୍ୱାନ ଦିଆଯାଉଛି । ବିପୁଳ ସଂଖ୍ୟାରେ ଗ୍ରାମଦାନ କରାଇବାକୁ ହଜାର ହଜାର କର୍ମୀ ଲାଗି ପଡ଼ିଛନ୍ତି । ସର୍ବୋଦୟ କାର୍ଯ୍ୟକ୍ରମର ଅନ୍ୟ ଦୁଇଟି ବିଭାଗ ଅବହେଳିତ ହେଲାପରି ଜଣା ଯାଉଛି । କିନ୍ତୁ ପ୍ରକୃତରେ ଏହା ସେପରି ନୁହେଁ ।

ବିନୋବାଜୀଙ୍କର ଉଚ୍ଚ ଆଶାନୁସାରେ ଗ୍ରାମଦାନ ହେଉଛି ମୂଳଦୁଆ ଯାହା ଉପରେ କି ଖଦୀ ଓ ଶାନ୍ତିସେନାରୂପୀ କାନ୍ଥ, ଖମ୍ବ ଇତ୍ୟାଦିକୁ ଠିଆ କରାଇବାକୁ ହେବ । ତାହାହେଲେ ଯାଇ ଗ୍ରାମସ୍ୱରାଜ୍ୟର ପୂର୍ଣ୍ଣାଙ୍ଗ ପ୍ରାସାଦଟି ନିର୍ମାଣ କରାଯାଇ ପାରିବ । ମୂଳଦୁଆଟିକୁ ତ ଆଗେ ପକାଇବାକୁ ହେବ । ତେଣୁ ଗ୍ରାମଦାନ ଉପରେ ଜୋର ଦେବାରେ ଅନ୍ୟ ଦୁଇଟି ବିଭାଗର ଅବହେଳା କରାଯାଉ ନାହିଁ ।

ଖଦୀ ଓ ଗ୍ରାମୋଦ୍ୟୋଗର ପ୍ରସାର ବିନା ଏବଂ ଶାନ୍ତିସେନା ଦଳର ବିନା ସଂଗଠନରେ ଗ୍ରାମଦାନର ଉଦ୍ଦେଶ୍ୟ କଦାପି ପୂର୍ଣ୍ଣାଙ୍ଗ ହୋଇ ପାରିବ ନାହିଁ ।

ପକ୍ଷାନ୍ତରେ ଅଭିଜ୍ଞତାରୁ ଜଣା ଯାଉଛି ଯେ ଗାଁ ଲୋକେ ଖଦୀ ଓ ଗ୍ରାମୋଦ୍ୟୋଗକୁ ଗ୍ରହଣ ନ କରିବା ଯାଏ ଏ ଦୁଇଟିର ବ୍ୟାପକ ପ୍ରସାର ହୋଇ ପାରିବ ନାହିଁ । ଆଜିତ ଭାରତରେ ଏକ ଲକ୍ଷ୍ୟ ଗ୍ରାମରେ ଖଦୀ ବା ଗ୍ରାମୋଦ୍ୟୋଗର କିଛି ନା କିଛି କାମ ଚାଲୁଛି । ମାତ୍ର ଏହିସବୁ ଭିତରୁ ଖୁବ୍ କମ ଗ୍ରାମରେହିଁ ଖଦୀ ଓ ଗ୍ରାମୋଦ୍ୟୋଗ ଗ୍ରାମ ଅର୍ଥନୀତିର କେନ୍ଦ୍ର ହୋଇ ପାରିଛି । କେବଳ

ମାତ୍ର ଗ୍ରାମଦାନହିଁ ଖଦି ଓ ଗ୍ରାମୋଦ୍ୟୋଗର ଲକ୍ଷ୍ୟକୁ ପୂର୍ଣ୍ଣ କରିପାରେ । ଏଣୁ ଯେଉଁ ଗ୍ରାମମାନଙ୍କରେ ଖଦି କାମ ହେଉଛି ବା ଗ୍ରାମୋଦ୍ୟୋଗମାନ ଚାଲିଛି, ସେସବୁ ଗ୍ରାମକୁ ଗ୍ରାମଦାନୀ କରାଇବା ପାଇଁ ଉଦ୍ୟମ କରିବା ଅତ୍ୟାବଶ୍ୟକ ହୋଇ ପଡ଼ୁଛି ।

ଗ୍ରାମଦାନ ଦେଶର ସବୁଠାରୁ ସଙ୍କଟପୂର୍ଣ୍ଣ ସମସ୍ୟାର ସମାଧାନ କରିବାକୁ ଚାହେଁ । ଏଣୁ ଯେଉଁ ହଜାର ହଜାର କର୍ମୀ ଓ ଗ୍ରାମବାସୀମାନେ ଗ୍ରାମଦାନର ବାଣୀ ପ୍ରଚାରରେ ଲାଗିଛନ୍ତି, ସେମାନେ ପ୍ରକୃତରେ ଶାନ୍ତିସୈନିକ ଭାବରେ କାମ କରୁଛନ୍ତି, ଶାନ୍ତିସୈନିକ ତାଲିକାରେ ସେମାନଙ୍କର ନାମ ଥାଉ ବା ନଥାଉ ଗୋଟିଏ ଗ୍ରାମ ବା ଅଞ୍ଚଳ ଗ୍ରାମଦାନୀ ହୋଇଗଲେ ସେଠାରେ ଲୋକଙ୍କ ସମର୍ଥନରେ ବୃହତ ଆକାରରେ ଶାନ୍ତିସେନାର ସଂଗଠନ କରିବା ସହଜ ହୋଇଥାଏ ।

ଆମ୍ଭର ଦେଶରେ ଏକତାର ଅଭାବ, ଆଞ୍ଚଳିକ ସଂକୀର୍ଣ୍ଣତା, ନୀଚ ସ୍ୱାର୍ଥପରତା ଆଦି ଧ୍ୱଂସକାରୀ ଶକ୍ତି ଲୁଚି ରହିଛି । ଏ ଗୁଡ଼ିକ ଗ୍ରାମଦାନ ଆଦର୍ଶର ବିରୋଧରେ ସର୍ବଦା ବାଧା ଓ ବିଚ୍ୟୁତି ସୃଷ୍ଟି କରୁଛି । ତେଣୁ ସେଗୁଡ଼ିକର ପ୍ରତିରୋଧ କରିବାପାଇଁ ଗ୍ରାମଦାନ ଭାବନାକୁ ସର୍ବଦା ଦୃଢ଼ ଓ ପରିପୂର୍ଣ୍ଣ କରିବାକୁ ହେବ । ଶାନ୍ତିସେନା ଓ ଶାନ୍ତିସେବା ଦଳର ଅହିଂସକ ଶକ୍ତି ଗ୍ରାମଦାନକୁ ସମସ୍ତ ପ୍ରକାରର ପ୍ରତିକ୍ରିୟାରୁ ରକ୍ଷା କରିବ ଏବଂ ଗ୍ରାମଦାନର ଆଦର୍ଶକୁ ସର୍ବଦା ଉଜ୍ଜ୍ୱଳ ରଖିବ ।

ଶ୍ରୀ ଜୟପ୍ରକାଶ ନାରାୟଣଙ୍କ ଦ୍ୱାରା ବ୍ୟବହୃତ ଉପମାନୁସାରେ ଆନ୍ଦୋଳନର ଏହି ଦୁଇଟି ଦିଗ ପରସ୍ପର ସମ୍ବନ୍ଧ ଓ ଅଭିନ୍ନ ଭାବରେ ଛନ୍ଦାଛନ୍ଦି ଅଛି । ଅନ୍ୟ ସବୁ ରଚନାତ୍ମକ କାର୍ଯ୍ୟର

ଏ ସ୍ୱରାଜ ମୂଳଦୁଆ ଅଟେ । ଗ୍ରାମସ୍ୱରାଜ୍ୟକୁ ବଳଦଗାଡ଼ି ସଙ୍ଗେ ତୁଳନା କରାଯାଇ ପାରେ । ଗ୍ରାମଦାନ ହେଲ ଏ ଗାଡ଼ିକୁ ଟାଣୁଥିବା ବଳଦ, ଶାନ୍ତିସେନା ଆଉ ଖଦୀ ଏ ଯୋଡ଼ିକ ଗାଡ଼ିର ଦୁଇଟି ଚକପରି । ଅନ୍ୟାନ୍ୟ ଗଠନମୂଳକ କାର୍ଯ୍ୟକ୍ରମଗୁଡ଼ିକ ଗାଡ଼ି ଉପରେ ରହିଥିବା ବୋଝ ତୁଲ୍ୟ ଅଟନ୍ତି ।

ବିନା ବଳଦରେ ଗାଡ଼ି ଯେପରି ଚାଲିପାରେ ନାହିଁ, ଠିକ୍ ସେହିପରି ଗ୍ରାମଦାନ ବ୍ୟତିରେକେ ଗ୍ରାମସ୍ୱରାଜ୍ୟ ସମ୍ଭବ ନୁହେଁ । ଏଣୁ ଗ୍ରାମଦାନରୂପୀ ଶକ୍ତି ଉତ୍ପାଦନ କରିବା ଉପରେ ବିନୋବାଜୀ ଜୋର ଦେଉଛନ୍ତି ।

ଅର୍ଥନୈତିକ ପରିସ୍ଥିତି ଓ ଅନ୍ୟବିବାଦ ଦେଶ ଭିତରେ ଅଶାନ୍ତି ଓ ବିଶୃଙ୍ଖଳା ସୃଷ୍ଟି କରିବାରେ ଲାଗିଛି । ବିନୋବାଜୀ ଏକ ବିପଦ ସଂକେତ ଦେଇ ସତର୍କ କରି ଦେଉଛନ୍ତି ଯେ କେବଳ ଗ୍ରାମଦାନହିଁ ଦେଶକୁ ସମସ୍ତ ହିଂସାର ବିପ୍ଳବରୁ ରକ୍ଷା କରିପାରିବ । ଏହା ଆସନ୍ନ ବିପଦର ସମ୍ଭାବନାର ଆଶୁ ପ୍ରତିକାର କରିବା ଲାଗି ବିନୋବାଜୀଙ୍କ ପ୍ରାଣରେ ଏକ ତୀବ୍ର ବ୍ୟାକୁଳତା ରହିଛି । ଦେଶର କଲ୍ୟାଣ ଚାହୁଁଥିବା ପ୍ରତ୍ୟେକ ନରନାରୀ ପ୍ରାଣରେ ଏହି ବ୍ୟାକୁଳତା ଜାଗିବା ଆବଶ୍ୟକ ।

---

# ଭୂଦାନ ପ୍ରାପ୍ତି ତଥା ବଣ୍ଟନର ପ୍ରଦେଶ-ଓ୍ୱାରୀ ହିସାବ

## ( ମାର୍ଚ୍ଚ, ୧୯୬୭ ପର୍ଯ୍ୟନ୍ତ )

| କ୍ରମାଙ୍କ | ପ୍ରଦେଶ | ଜିଲ୍ଲା ସଂଖ୍ୟା | ଭୂମିପ୍ରାପ୍ତି ଏକର | ଭୂମିବଣ୍ଟନ ଏକର | ବଣ୍ଟନର ଅଯୋଗ୍ୟଭୂମି ଏକର | ବଣ୍ଟନ ଯୋଗ୍ୟ ଅବଶିଷ୍ଟ ଭୂମି ଏକର |
|---|---|---|---|---|---|---|
| ୧ | ଆସାମ | ୧୯ | ୧୧, ୯୦୫ | ୨୬୫ | | ୧୧, ୭୭୦ |
| ୨ | ଆନ୍ଧ୍ର | ୨୦ | ୨୪୨, ୯୫୨ | ୧୦୩, ୩୦୮ | ୮୬, ୩୮୫ | ୫୩, ୨୫୯ |
| ୩ | ଉତ୍କଳ | ୧୩ | ୧୭୩, ୮୭୨ | ୧୦୩, ୪୧୬ | ୧୫, ୨୨୨ | ୫୫, ୨୩୪ |
| ୪ | ଉତ୍ତରପ୍ରଦେଶ | ୫୪ | ୪୩୪, ୩୫୫ | ୧୮୪, ୨୭୪ | ୧୩୭, ୧୨୭ | ୧୧୨, ୯୫୦ |
| ୫ | କେରଳ | ୯ | ୨୬, ୨୯୩ | ୫, ୭୭୪ | ୭, ୯୯୯ | ୧୨, ୫୨୦ |
| ୬ | ତାମିଲନାଡ଼ୁ | ୧୩ | ୮୦, ୪୩୩ | ୨୧, ୫୧୯ | —— | ୫୮, ୯୧୪ |
| ୭ | ଦିଲ୍ଲୀ | ୧ | ୩୦୦ | ୧୮୦ | ୧୨୦ | —— |
| ୮ | ପଞ୍ଜାବ | ୧୮ | ୧୪, ୭୩୯ | ୩, ୬୦୧ | ୩, ୩୮୦ | ୭, ୭୫୮ |
| ୯ | ଗୁଜୁରାଟ | ୧୮ | ୧୦୩, ୨୪୨ | ୫୨, ୦୮୦ | ୨୭, ୯୯୪ | ୨୩, ୧୬୮ |
| ୧୦ | ମହାରାଷ୍ଟ୍ର | ୨୫ | ୧୫୦, ୮୦୨ | ୧୦୬, ୧୧୧ | ୩୮, ୩୪୩ | ୫, ୩୪୮ |
| ୧୧ | ମଧ୍ୟପ୍ରଦେଶ | ୪୩ | ୫୦୫, ୪୦୨ | ୧୫୬, ୫୦୬ | ୧୭୪, ୫୩୧ | ୭୪, ୩୬୫ |
| ୧୨ | ମୈସୁର | ୧୯ | ୨୦, ୦୮୬ | ୩, ୧୮୧ | ୫୩ | ୧୬, ୮୫ |
| ୧୩ | ବଙ୍ଗଳା | ୧୭ | ୧୨, ୯୧୮ | ୩, ୮୫୬ | ୮, ୪୨୬ | ୬୩୬ |
| ୧୪ | ବିହାର | ୧୬ | ୨୧୩୨, ୭୮୭ | ୩୧୧, ୦୩୭ | ୧୦୭୯, ୭୦୧ | ୭୪୨, ୦୪୯ |
| ୧୫ | ରାଜସ୍ଥାନ | ୨୬ | ୪୨୯, ୪୨୮ | ୯୨, ୭୩୪ | ୧୧୧, ୭୫୭ | ୨୨୪, ୯୩୭ |
| ୧୬ | ହିମାଚଳ | ୬ | ୫, ୨୪୦ | ୨, ୫୩୧ | —— | ୨, ୭୦୯ |
| ୧୭ | ଜମ୍ମୁ-କାଶ୍ମୀର | ୧୫ | ୨୧୧ | ୫ | —— | ୨୦୬ |
| ୧୮ | ମୋଟ | ୩୩୩ | ୪୨, ୪୪, ୯୯୧ | ୧୧, ୫୧, ୩୭୮ | ୧୬, ୯୧, ୦୪୧ | ୧୪, ୭୨, ୫୭୨ |

# ଭାରତରେ ପ୍ରଦେଶ-ଓ୍ୱାରୀ ଗ୍ରାମଦାନ
## ( ୧ ନଭେମ୍ବର, ୧୯୬୭ ପର୍ଯ୍ୟନ୍ତ )

| କ୍ରମାଙ୍କ | ପ୍ରଦେଶ | ତୋଫାନ ଗ୍ରାମଦାନ ପୂର୍ବରୁ ମେ, ୧୯୬୫ ପର୍ଯ୍ୟନ୍ତ | ତୋଫାନ ଗ୍ରାମଦାନ ପରେ ବଲୟୁ'ସମ୍ମିଳନୀ ଏପ୍ରିଲ, ୬୭ ସୁଦ୍ଧା | ମୋଟ ଗ୍ରାମଦାନ ୧ ନଭେମ୍ବର, ୧୯୬୭ ପର୍ଯ୍ୟନ୍ତ | ମୋଟ ବ୍ଲକ ଦାନ ୧ ନଭେମ୍ବର, ୧୯୬୭ ପର୍ଯ୍ୟନ୍ତ |
|---|---|---|---|---|---|
| ୧ | ବିହାର | ୩୫୦ | ୫୪୭୨ | ୧୫୧୦୨ | ୧୦୦ |
| ୨ | ଓଡ଼ିଶା | ୨୪୬୯ | ୨୨୫୧ | ୬୯୮୦ | ୩୧ |
| ୩ | ତାମିଲନାଡ଼ୁ | ୩୨୫ | ୬୩୮ | ୩୩୯୬ | ୨୫ |
| ୪ | ମଧ୍ୟପ୍ରଦେଶ | ୧୮୪ | ୮୭୮ | ୨୫୫୦ | ୫ |
| ୫ | ମହାରାଷ୍ଟ୍ର | ୯୧୫ | ୭୫୫ | ୨୮୯୯ | ୧୧ |
| ୬ | ରାଜସ୍ଥାନ | ୩୭୮ | ୪୫୬ | ୧୦୨୧ | — |
| ୭ | ଗୁଜୁରାଟ | ୨୦୦ | ୧୧୪ | ୭୫୮ | ୩ |
| ୮ | ଆନ୍ଧ୍ର | ୫୯୫ | ୪୯୦ | ୪୨୦୦ | ୧୦ |
| ୯ | ପଶ୍ଚିମ ବଙ୍ଗଳା | ୩୫୪ | ୨୨୮ | ୬୨୭ | — |
| ୧୦ | ଆସାମ | ୯୫୭ | — | ୧୪୬୩ | ୧ |
| ୧୧ | ପଞ୍ଜାବ (ସଂଯୁକ୍ତ) | ୬ | — | ୨୯୦୦ | ୭ |
| ୧୨ | ଉତ୍ତରପ୍ରଦେଶ | ୧୨୩ | ୧୮୪ | ୧୫୫୪ | ୯ |
| ୧୩ | ହିମାଚଳ ପ୍ରଦେଶ | ୪ | ୧୩ | ୧୭ | — |
| ୧୪ | କେରଳ | ୪୦୩ | ୬ | ୪୦୯ | — |
| ୧୫ | କର୍ଣ୍ଣାଟକ | ୫୮ | — | ୨୨୦ | — |
| ୧୬ | ଦିଲ୍ଲୀ | — | — | ୬୪ | — |
| ୧୭ | ମୋଟ | ୭,୩୨୧ | ୧୧,୪୭୫ | ୪୬୧୭୪ | ୨୦୨ |

## ଶାନ୍ତସେନା ସମିତର ସଂଯୋଜକ-ଗଣ

| କ୍ରମାଙ୍କ | ପ୍ରଦେଶ | ନାମ | ଠିକଣା |
|---|---|---|---|
| ୧ | ଆସାମ | ଶ୍ରୀ ତରୁଣ ବରୁଆ, | ଗୌହାଟୀ |
| ୨ | ବଙ୍ଗଳା | ଶ୍ରୀ କୃଷ୍ଣକାନ୍ତ ଚକ୍ରବର୍ତ୍ତୀ | କଲକତା-୧୨ |
| ୩ | ବମ୍ବାଇ | ଶ୍ରୀ ଲଲୁ ଶାହ, ଗାଓଁଦେଖ, ବମ୍ବେଇ-୭ | |
| ୪ | ଗୁଜୁରାଠ | ଶ୍ରୀ ଜଗଦୀଶ ଲଖିଆ | ବରୋଦା-୧ |
| ୫ | କେରଳ | ଶ୍ରୀ କେ. ଦାମୋଦରନ୍ | ତ୍ରିଚୁର |
| ୬ | ମହାରାଷ୍ଟ୍ର | ଶ୍ରୀ ମୋତିଲାଲ ମନ୍ତ୍ରୀ | ବୀଡ଼ |
| ୭ | ମଧ୍ୟପ୍ରଦେଶ | ଶ୍ରୀ ଚତୁର୍ଭୁଜ ପାଠକ | ଛତରପୁର |
| ୮ | ପଞ୍ଜାବ | ଶ୍ରୀ ଦାଦା ଗନେଶୀଲାଲ | ରେଓ୍ୱାଡ଼ୀ-ଗୁଡ଼ଗାଁଓ |
| ୯ | ଉ: ପ୍ରଦେଶ | ଶ୍ରୀ ବନସ୍ପୁ ଅବସ୍ଥୀ | କାନପୁର |
| ୧୦ | ରାଜସ୍ଥାନ | ଶ୍ରୀ ବଦ୍ରୀପ୍ରସାଦ ସ୍ୱାମୀ | ଜୟପୁର (ରାଜସ୍ଥାନ) |
| ୧୧ | ଉତ୍କଳ | ଶ୍ରୀ ରତନ ଦାସ<br>ଶ୍ରୀ ରବି ସାହୁ | ପ୍ରାଦେଶିକ ସର୍ବୋଦୟ ଅଫିସ<br>ଥୋଡ଼ିଆସାହି ପୋ: କଟକ-୧<br>ଫୋନ୍—କଟକ-୩୨୭ |

# ଭାରତରେ ଶାନ୍ତିସୈନିକ ଏବଂ ଶାନ୍ତିକେନ୍ଦ୍ର

( ଅଗଷ୍ଟ ୧୯୬୭ ପର୍ଯ୍ୟନ୍ତ )

| କ୍ରମାଙ୍କ | ପ୍ରଦେଶ | ଶାନ୍ତିସୈନିକ | ଶାନ୍ତିକେନ୍ଦ୍ର |
|---|---|---|---|
| ୧ | ବିହାର | ୪୪୭୩ | ୩୪୬ |
| ୨ | ଉତ୍ତରପ୍ରଦେଶ | ୨,୬୪୧ | ୧୦୫ |
| ୩ | ମହାରାଷ୍ଟ୍ର | ୧,୮୭୧ | ୩୦୦ |
| ୪ | ରାଜସ୍ଥାନ | ୬୯୯ | ୮୪ |
| ୫ | ମଧ୍ୟପ୍ରଦେଶ | ୬୧୩ | ୪୧ |
| ୬ | ପଞ୍ଜାବ | ୪୦୨ | ୭ |
| ୭ | ଆସାମ | ୩୮୦ | ୮୦ |
| ୮ | ବଙ୍ଗଳା | ୨୫୨ | ୧୪ |
| ୯ | ଉତ୍କଳ | ୨୧୫ | ୩୬ |
| ୧୦ | ଦିଲ୍ଲୀ | ୧୯୫ | — |
| ୧୧ | ଆନ୍ଧ୍ର | ୧୭୨ | ୧ |
| ୧୨ | ଗୁଜୁରାଟ | ୧୦୦ | ୮ |
| ୧୩ | କେରଳ | ୬୬ | ୧୯ |
| ୧୪ | ତାମିଲନାଡ଼ୁ | ୫୯ | ୪୫ |
| ୧୫ | ମୈସୁର | ୧୭ | ୧୨ |
| ୧୬ | ହିମାଚଳ ପ୍ରଦେଶ | ୭ | ୧୨ |
| ୧୭ | ନାଗାଲ୍ୟାଣ୍ଡ | — | ୨ |
| ୧୮ | ନେଫା | — | ୬ |
| ୧୯ | ମୋଟ | ୧୨,୧୬୨ | ୧,୧୧୮ |

